# ପୃଥିବୀ ଟଳମଳ
(କବିତା ସଂକଳନ)

## ରବି ସିଂ

ପ୍ରକାଶକ : ଅପୂର୍ବା
୪୮, ମଧୁସୂଦନ ନଗର, ଭୁବନେଶ୍ୱର- ୭୫୧ ୦୦୧

ପ୍ରଥମ ସଂସ୍କରଣ : କାର୍ତ୍ତିକ ପୂର୍ଣ୍ଣିମା, ୨୦୦୪



ଛାପାସଂଖ୍ୟା : ୫୦୦ (ପାଂଚଶହ)

ମୁଦ୍ରଣ : ଅପୂର୍ବା ଅଫ୍‌ସେଟ୍, ଭୁବନେଶ୍ୱର

ପ୍ରଚ୍ଛଦ : କ୍ଷୀରୋଦ ଚନ୍ଦ୍ର ପତି

ମୂଲ୍ୟ : ୬୦ ଟଂକା

**PRUTHIBI TALAMALA**
A Collection of Poems by Rabi Singh

Publisher : Apurba
48,Madhusudan Nagar, Bhubaneswar - 751 001

First Edition : Kartika Purnima, 2004



Printed at : Apurba Off-Set, Bhubaneswar, Pin-751 001

Cover Design : Kshirod C. Pati

**Price : Rs.60 /-(Sixty only)**

# ଉତ୍ସର୍ଗ

ବିଂଶ ଓ ଏକବିଂଶ ଶତାବ୍ଦୀର ଲୌହମାନବ,
ସାମ୍ରାଜ୍ୟବାଦ, ସମରବାଦ, ଆଧିପତ୍ୟବାଦ-ବିରୋଧୀ
ସ୍ୱାଭିମାନର ଉତ୍ତୁଙ୍ଗ ମୀନାର ତଥା ବୀର ମହାବଳ
ଇରାକ୍‌ର ରାଷ୍ଟ୍ରପତି
ସଦ୍ଦାମ୍ ହୁସେନ୍‌ଙ୍କ
ମହାନ୍ ବୀରତ୍ୱର ବେଦି ମୂଳେ...

-ରବି ସିଂ

# ଅନୁଭୂତି

ଏଥିରେ ଥିବା କବିତା ଗୁଡ଼ିକରୁ ଅଧିକାଂଶ ପ୍ରାୟ ଅପ୍ରକାଶିତ । ପତ୍ର ପତ୍ରିକାମାନଙ୍କୁ ପ୍ରକାଶନ ପାଇଁ କବିତା ପଠାଇବାର ଅଧବସାୟ ମୁଁ ତ୍ୟାଗ କରିଛି ଦୀର୍ଘ କୋଡ଼ିଏ ବର୍ଷ ତଳୁ । ତାର କାରଣ ଏକାଧିକ :(୧) ମୋ କବିତା ପତ୍ରପତ୍ରିକାର କର୍ତ୍ତୃପକ୍ଷ ଶୁଦ୍ଧଭାବରେ ଛାପିବାକୁ ଅସମର୍ଥ, ଏବେ ବି ସେମାନଙ୍କ ସେହି ଅସାମର୍ଥ୍ୟ ବଳବନ୍ତର ରହିଛି । (୨) ସଂପ୍ରତି ମୋର ଯାହା ବୟସ ମୋର ସାହିତ୍ୟିକ ଓ କାବ୍ୟିକ ପ୍ରତିଷ୍ଠା, ସେଥିରେ କେତେକ ପତ୍ର ପତ୍ରିକା ସଂପାଦକ ବଂଧୁଙ୍କ ଅନୁରୋଧ ଏବଂ ନିବେଦନ ଏଡ଼ାଇ ନପାରି କବିତାଟିଏ ଦେଲେ ତାହା ପ୍ରଶାସନିକ-ଧଳାହାତୀମାନଙ୍କ କବିତାର ଅଧଃସ୍ତନ କବିତା ଭାବରେ ଏବଂ ଅଶୁଦ୍ଧ ଭାବରେ ପ୍ରକାଶିତ ହୁଏ । (୩) ପ୍ରକାଶିତ ଲେଖା ନିମନ୍ତେ ପତ୍ର ପତ୍ରିକା ସଂପାଦକମାନେ ଲେଖକର ପାରିଶ୍ରମିକ ବାବଦକୁ ଫଟା ପାହୁଲାଟିଏ ବି ଦିଅନ୍ତି ନାହିଁ । (ପୂଜା ସଂଖ୍ୟା ଆଦିରେ ଲକ୍ଷ ଲକ୍ଷ ଟଙ୍କାର ବିଜ୍ଞାପନ ପାଇଲେ ବି) ମୋ ଲେଖା ପ୍ରକାଶ ପାଇଥିବା ପତ୍ରିକା ସଂଖ୍ୟାଟିର ଏକକିତା କପି ମଧ୍ୟ ଦିଅନ୍ତି ନାହିଁ-ମୁଁ ପକେଟ୍‌ରୁ ପଇସା ଖର୍ଚ୍ଚକରି ସେ ସଂଖ୍ୟାଟିକୁ ବଜାରରୁ କିଣେ । ସେଥିପାଇଁ ଓଡିଶାର ଏକ ପ୍ରତିଷ୍ଠିତ ସାହିତ୍ୟ ପତ୍ରିକାକୁ ମୁଁ ବହୁବର୍ଷ ହେଲା ବାସନ୍ଦ ବା ବୟକଟ୍ କରିଛି ।

ଆମ ରାଜ୍ୟରେ ଅଧିକାଂଶ କବି-ଲେଖକ ମାନଙ୍କର ସାହିତ୍ୟ ସାଧନାଟା ଯେହେତୁ 'ପାର୍ଟ୍-ଟାଇମ୍ ଜବ୍', ସେହେତୁ ସେମାନେ ପତ୍ରପତ୍ରିକା ପୃଷ୍ଠାରେ ନିଜ ନିଜର ଲେଖା ପ୍ରକାଶ କରିବା ପାଇଁ 'ଲବି'ର ମଧ୍ୟ ଆଶ୍ରୟ ନେଇଥାନ୍ତି ସାହିତ୍ୟିକ ଯଶ ଓ ଖ୍ୟାତିର ଲାଳସାରେ । ସେମାନଙ୍କର ଲେଖାଟି ପ୍ରକାଶ ପାଇଲେ ସେମାନେ କୃତଜ୍ଞ ଆଉ ଗଦଗଦ୍ । ମାତ୍ର ମୋ କ୍ଷେତ୍ରରେ କଥାଟା ସଂପୂର୍ଣ୍ଣ ବିପରୀତ । ସେଥିପାଇଁ ବାରମ୍ଵାର ଅନୁରୋଧ ସତ୍ତ୍ଵେ ମୁଁ ଆଉ କୌଣସି ପତ୍ର ପତ୍ରିକାକୁ ମୋର ଗଦ୍ୟ, ପଦ୍ୟ ଆଦିକୁ ପଠାଇବାକୁ ଅନିଚ୍ଛୁକ ।

କହିବା ବାହୁଲ୍ୟ, ମୋ ସାହିତ୍ୟର ଏକ ନିର୍ଦ୍ଦିଷ୍ଟ ପାଠକଶ୍ରେଣୀ ଓଡ଼ିଶାରେ ଅଛନ୍ତି । ପ୍ରକାଶନ ସଂସ୍ଥାମାନେ ଏ ସଂପର୍କରେ ଭଲଭାବରେ ଅବଗତ ଥିଲେ ବି ମୋ ପୁସ୍ତକ ପ୍ରକାଶନ ପାଇଁ କୁଣ୍ଠିତ ଏହି କାରଣରୁ  ଯେ, ମୋ ପୁସ୍ତକ ପ୍ରକାଶକଲେ ମୋତେ

'ରୟାଲଟି' ବା ରାଜଭାଗ କଡ଼ାକ୍ରାନ୍ତି କରି ଦେବାକୁ ପଡ଼ିବ । ତଥାପି ଯେତେ ପୁସ୍ତକ ବା ଗ୍ରଂଥ ମୋର ପ୍ରକାଶିତ ହୋଇଛି, ସେ ବାବଦକୁ ପ୍ରକାଶକଙ୍କ ଠାରୁ ମୁଁ ମୋର ସମୁଚିତ ରାଜଭାଗ ପାଇନାହିଁ । ଯାହା ପାଇଛି ତାହା ବହୁ ଅଧ୍ୟବସାୟ ପରେ ପୁଣି ପାଠକମାନଙ୍କ ଭିତରେ ଏପରି ବି ଲୋକ ଅଛନ୍ତି ଭିକାରୀ ପରି ଆସି ବିନା ମୂଲ୍ୟରେ ବହି ଖଣ୍ଡେ ହାତପତେଇ ମାଗନ୍ତି । ଅଥଚ ସେମାନେ ନିଜର ପୁତ୍ରକନ୍ୟା, ସହଧର୍ମିଣୀ ପାଇଁ ଦାମିକା ପୋଷାକ, ଶାଢ଼ି, ପ୍ରସାଧନ ସାମଗ୍ରୀମାନ କିଣିବାରେ ହେଳା କରନ୍ତି ନାହିଁ । ପତ୍ରପତ୍ରିକା ମାନେ କବି ଲେଖକକୁ ପାରିଶ୍ରମିକ ଦେବେ ନାହିଁ । ପ୍ରକାଶକମାନେ ଲେଖକକୁ 'ରୟାଲଟି' ଦେବାପାଇଁ ନାରାଜ ଓ କୁଣ୍ଠିତ, ପାଠକ ବହି ନ କିଣି ଶସ୍ତା ସାହିତ୍ୟ ପ୍ରେମର ବଶବର୍ତ୍ତୀ ହୋଇ ମୁହଁ ଖୋଲି ଲେଖକକୁ ହାତପତାଇ ମାଗଣା ବହି ମାଗେ, କେହି କେହି ବହି ପଢ଼ି ଫେରାଇ ଦେବା ପାଇଁ କହି ବହି ମାଗନ୍ତି । ଏହି ମରୁମୟ ସାରସ୍ୱତ ଆବହ ମଧ୍ୟରେ କବି, ଲେଖକ କିପରି ବଂଚିବ, କିପରି ଚଳିବ, କଅଣ ଲେଖିବ, ସେ କଥା ପ୍ରତି କାହାରି ନଜର ନାହିଁ ।

ବିଂଶ ଶତାବ୍ଦୀର ୫୦ ଦଶକରୁ ଅଦ୍ୟାବଧି ସାହିତ୍ୟକୁ ଜୀବନ ଓ ଜୀବନକୁ ସାହିତ୍ୟ କରି ଏ ଅଧମ ରବି ସିଂ କଲମକୁ ବନ୍ଧକ ନରଖି, ମୁଣ୍ଡକୁ ନବିକି ସାମାଜିକ ଅନ୍ୟାୟ, ଅତ୍ୟାଚାର, ରାଜରୋଷ ଭିତରେ ରକ୍ତ ସମୁଦ୍ର ସନ୍ତରଣ ମଧ୍ୟରେ ବିସ୍ମୟକର ଭାବରେ ବଂଚି ଆସିଛି- *'ବଡ଼ କଠିନ ସେ ପ୍ରୀତି ପାଳିବା/ତୀକ୍ଷ୍ଣ ଅସିଧାରେ ପଥଚାଲିବା'* ନ୍ୟାୟରେ ।

ମୋ କାବ୍ୟପୁରୁଷ ଯେହେତୁ ସାମାଜିକ-ପ୍ରତିବଦ୍ଧତା ବା ଅଂଗୀକାରର ଏକନିଷ୍ଠ ଉପାସକ, ସେହେତୁ ଏଥିରେ ଥିବା କବିତାଗୁଡ଼ିକ ତା'ରି ଆଲୋକରେ ପ୍ରୋଜ୍ଜ୍ୱଳ । ମୋ କବିତାର ଭାଷା, ଧ୍ୱନି, ଶବ୍ଦଚୟନ, ଛନ୍ଦର ଉତ୍ତାପ ସହିତ ମାନବିକତାବାଦ ପାଇଁ ମୋର ଅଣନିଃଶ୍ୱାସୀ ସଂଗ୍ରାମ ସଂପର୍କରେ ପାଠକମାନେ ଅବଗତ । ତେଣୁ ଏଥିର କବିତାମାନେ ନିଜେ ନିଜର କଥକ ନିଜ ପରିଚୟପତ୍ରର ନିଜେ ବହନକାରୀ ।

ପରିଶେଷରେ ଏ କାବ୍ୟଗ୍ରଂଥର ପ୍ରକାଶକ ତଥା 'ଅପୂର୍ବା' ପ୍ରକାଶନ ସଂସ୍ଥାର ସ୍ୱତ୍ତ୍ୱାଧିକାରୀ ଶ୍ରଦ୍ଧେୟ କ୍ଷୀରୋଦ ଚନ୍ଦ୍ର ପତିଙ୍କୁ ହାର୍ଦ୍ଦିକ ଧନ୍ୟବାଦ ।

-ରବି ସିଂ

# ସୂଚୀପତ୍ର

# ହେ ଆକାଶ !

ହେ ଆକାଶ ! ପରିବ୍ୟାପ୍ତ, ଶେଷହୀନ, ହେ ବିସ୍ମୟକର,
ଚିଂତାର ଅତୀତ ତମେ, ହେ ଉଦାର, ଆହେ ଭୟଙ୍କର ।

ଭାଷାହୀନ, ଆହେ ମୌନୀ, ଦିବସରେ ତମେତ ସୁନୀଳ,
ରଜନୀରେ ଘନ କଳା, ଛାୟାପଥ-ମଖା-କଳେବର ।

କେବେ ତମେ ସୃଷ୍ଟି ହେଲ
ତାର କିଛି ନାହିଁ ଇତିହାସ,
କେ ତମକୁ ଜନ୍ମଦେଲା
କିଏ ମାତା, କାହାର ଔରସ ?
କେହିତ ଜାଣନ୍ତି ନାହିଁ
ଜାଣିବାର କିଛିବି ଉପାୟ-
ନାହିଁ ନାହିଁ, ଚେଷ୍ଟାକଲେ
ଠିଆହୁଏ ଆସିତ ବିସ୍ମୟ
ତାର ଭ୍ରୂକୁଂଚନେ ଆଉ
ଅଟ୍ଟହାସେ ଥରିଉଠେ ଛାତି,
ଆହେ ମହା-ଜାଗତିକ
ଏ କବିର ଘେନହେ ପ୍ରଣତି ।
ହେ ଗମ୍ଭୀର, ହେ ବିମର୍ଷ
କେବେ ସ୍ୱଚ୍ଛ, ଢ଼ାଳ ଅଶ୍ରୁବାରି,
କେବେବା ନିରଶ୍ରୁ ତମେ
ରୌଦ୍ରଦଗ୍ଧ, ରୁଦ୍ର ବେଶଧାରୀ ।
ମେଘ-ଶିଶୁ କ୍ରୀଡ଼ାର ଅଂଗନ,
ଏକି ମାୟା, ଏକି କାୟା

ହେ ଦୁର୍ବୋଧ୍ୟ ଆକାଶ ମହାନ ?
ବ୍ରହ୍ମାଣ୍ଡର ଚଂଦ୍ରାତପ
କି ବିଶାଳ ପରିବ୍ୟାପ୍ତ ଛାତି,
କିଛିତ କହିନ ତମେ
ଦେଇନାହଁ ନିଜ ପରିଚିତି ।
ସବୁ ସତ୍ତ୍ୱେ ହେ ଆକାଶ ତମ ଆଶୀର୍ବାଦ
କରିଅଛି ଆୟୁଷ୍ମାନ, କରିଅଛି ମୋତେ ତ ଦୁର୍ମଦ ।

ତମେତ ଦେଇଛ ମୋତେ ତମ ତଳେ ବାଟଚଲା ନିଶା,
ସମ୍ମୁଖର ଆମନ୍ତ୍ରଣେ ଲଭିଛି ମୁଁ ଅନନ୍ତ ଜିଜ୍ଞାସା ।

ତମ ଅଶ୍ରୁ, ତମ ହସ, ବିଦ୍ରୋହର ଭୀମକାନ୍ତ ରୂପ,
ବଜ୍ରର ଧମନୀ ଛିଡା-ଘଡଘଡ଼ି, ଇନ୍ଦ୍ର ମେଘ କୋପ ।

କେବେବା ଧରିଛ ହାତେ ଧ୍ୱଂସଧନ୍ୟା ଝଡର ହାତୁଡ଼ି,
ଭଗ୍ନଦୂତ, ଯା ପାଇଛ ଭାଂଗିଅଛ ନିଷ୍ଠୁର ନିୟତି ।

ତାରକାର ସୁରଭିତ କମନୀୟ କୁସୁମ-ତୋରଣେ,
ତମ ଜାଗତିକ-ପ୍ରେମ ଦେଖିଛି ମୁଁ ନିଃସଂଗ ଅୟନେ ।

ହେ ପ୍ରେମିକ, ହେ ବିଦ୍ରୋହୀ, ସୀମାହୀନ ମହା ଉପତ୍ୟକା,
ହେ ବିସ୍ମୟ, କ୍ଷୟହୀନ ହୁତାଶନ, ସ୍ୱାହାହୀନ ଶିଖା ।

ଆହେ ସତ୍ୟ, ଚିରନ୍ତନ, ଅବିନାଶ, ସଦା ବିରାଜିତ,
କ୍ଷୁଦ୍ର ଏକ ଜୀବ ମୁହିଁ, ହେ ବିସ୍ମୟ ଘେନ ପ୍ରଣିପାତ ।

❑❑❑

ରଚନା କାଳ : ୧୫ ଅଗଷ୍ଟ ୨୦୦୩

# ଲୁହର ଦରିଆ

ଜୀବନଟା ମୋର ଲହୁର ଦରିଆ, ବିଦ୍ରୋହ ତାର ଢେଉ,
ହୃଦୟ ଅତଳେ ବାଡବ ବହ୍ନି ନରବଧ୍ ଦାଉ ଦାଉ ।
ମୁଁ ତ ଫିନିକ୍ସ ପକ୍ଷୀର ଡେଣା
ଝଡର ବେହେଲା, ଅଗ୍ନିର ବୀଣା
ନିଃଶ୍ୱାସ ମୋର ବିଶ୍ୱ-ଦୋହଲା, ବିଷମ-ତାଳର ବିଚି,
ବସ୍ତୁର ମୁହିଁ ଅମିତ ଶକ୍ତି, ଅଜେୟ ସବ୍ୟସାଚୀ ।

ମୋର ଜୀବନର ରୁଧିର-ସାଗରେ ଭାସିନାହିଁ କେବେ ପୋତ,
କେଉଁ ନାବିକର ନୌକାର ପାଲ ଜୀବନେ ମୁଁ ଦେଖିନିତ !
ଓଠେ ଚାପିଧରି ବିଷର ମୁରଲୀ
ଦିବସ-ରଜନୀ ବିଷ-ସୁର୍ ଢ଼ାଳି
ଅଶିବକୁ ଅହି ଦଂଶନ କରି, ରଚି ବିଷ-କୁଣ୍ଡଳି,
ବିଷ-ବେଣୁ-ବନେ ମୁଁ ବିଷ-ମୋହନ, ବିଷ-କଦମ୍ବ କଳି ।

ଉଲ୍‌କାର ନୀଡ ଅନ୍ତୁଡ଼ିଶାଳ, ଶୈଶବ ଧୂମକେତୁ,
ଧୂର୍ଜଟୀ-ଜଟା ତଳ ଘନଘଟା, କ୍ରାନ୍ତିର ଲାଲ-ରତୁ ।
ଜନ୍ମ ଜାତକେ ନାହିଁ ମୋ ସାଲିସ୍
ମୂଲ୍ୟବୋଧ ମୋ ଚିର ବେସାଲିସ୍
ଅଗ୍ରଗତିର ତୋଫାନେ ସୋପାନେ ଘଟିଛି ମୋ ଉତ୍‌ଥାନ,
ପ୍ରତିଘାତେ ଆଉ ଘାତେ, ସଂଘାତେ ସେନାପତି ।

କେତେ ଶତ ଲୁହ-ନଦୀ, ଉପନଦୀ ମୋ ବୁକେ ଆତ୍ମଦାନ-
କଲେବି ଶାନ୍ତ ହୋଇନି, ହୋଇଛି ଭୀଷଣୁ ଭୀଷଣ ପ୍ରାଣ ।
ପ୍ରବଳ ଲହରୀ, ଢ଼େଉ ଉତ୍ତାଳ

କ୍ଷୋଭ-ବିକ୍ଷୋଭ, ତପ୍ତ ଜୁଆର
କରିଛିତ ମୋତେ ଭୁଜ ବଳିୟାର, ନିଖିଳ ବିଶ୍ୱଭରି-
ଲୋହିତ-ଚେତନା, କ୍ରାନ୍ତିର ଶିଖା, ଏଠି ନିଭେ, ସେଠି ଜଳି ।

ଲହୁ ଓ ଲୁହର ମୁହିଁତ ଦରିଆ ଫୁଲୁଥିବି ଚିରକାଳ,
ଲଘୁଚାପ ମାନେ ଆସିତ ଘେନିବେ ଝଡର ରୂପାନ୍ତର ।
ସେ ଝଡ ଧୂସର ବୀର ମହାବଳ
ଭାଂଗିଛି କେତେ ଶୋଷଣର ଗଡ
ଇତିହାସ-ମୋଡ଼େ କେତେ ବିପ୍ଳବ ଚାଟିଛିତ ତାର ଜିଭ,
ମୁଁ ତାର ସ୍ରଷ୍ଟା, ଜନନୀ-ଜନକ, ରୁଧିର ମହାର୍ଣ୍ଣବ ।

ଇତିହାସ-ମହାକାବ୍ୟର ପୋଥି, ସାମ୍ୟ-ସମାଜ ବୋଧି,
ଶାନ୍ତିପାଇଁ କି ସଂଗ୍ରାମ ମୋର ଯୁଦ୍ଧତ ନିରବଧି ।
ଫାଇଟ୍ ଫାଇଟ୍, ଲେଫ୍ଟ୍-ରାଇଟ୍
ଜୟ-ପରାଜୟ, ଏଗେନ୍ ଫାଇଟ୍
ଚରମ ବିଜୟ ଅବଧି ଆଘାତ, ପ୍ରବଳ ଆକ୍ରମଣ,
ସେ ଲେଖେ ମାନବ ବିଜୟର ଗାଥା, ସେହି ମୋ ବିଶ୍ୱପ୍ରେମ ।

ମୁଁ ତ ଅଛି, ଥିଲି, ରହିଛି, ରହିବି ଅବିନାଶ, ଅକ୍ଷୟ,
ଜୀବନ ଯେଉଁଠି ବରଣ କରିବା ପାଇଁ ଯିବ ପରାଜୟ,
ତାକୁ ମୁଁତ ଦେବି ବଜ୍ର-ବିଜୁଳି
ସୂର୍ଯ୍ୟ-ବୀର୍ଯ୍ୟ, ଆଣବିକ ଧୂଳି
ଜୀବନବାଦର ଅଜେୟ-ପ୍ରହରୀ, ମୃତ୍ୟୁକୁ ଗୃହବଧୂ-
କରି ମୁଁ ଆଣିବି, ଦାନବବାଦର ଚିତାନଳ ଜାଳି ଧୁ ଧୁ ।

ମୋର କାବ୍ୟର ଛନ୍ଦ ତାତିରେ ବାସୁକୀ ଛାଡ଼ିବ କାତି,
ବିପ୍ଳବିଣୀ ମୋ ଭାଷା-ଭାରତୀର ଶବ୍ଦ, ଯମକ, ଯତି,

ଆକାଶୁଁ ନିଗାଡି ଆକାଶର ରସ
ତା ସାଥେ ମିଶାଇ ପୃଥିବୀର ବିଷ
ବିଶ୍ୱ-ତୋରଣେ ଲେଖିବି କବି ମୁଁ ସାମ୍ୟର ଜୟଗାନ,
ଲୁହରୁ ପାଲଟି ଲହୁର ଦରିଆ କରୁଛି ମୁଁ ଗର୍ଜନ ।

❑❑❑

ରଚନା କାଳ : ୬ ନଭେମ୍ବର ୨୦୦୩ ରାତି ୧୦ଟା

# ଡାକନା କେହି

ପୂର୍ବାଶାର ରକ୍ତତୁଠେ
ଉଷାର ଯେଉଁ ପଦ୍ମ ଫୁଟେ
ଭୈରବୀର ନାଲିଆ ଓଠେ
        ଉଦ୍ଦାମ ମୋ ଯୌବନରେ
        ଦେଇଛି କବି ଚୁମ୍ବନ,
ଥରାଇ ମୋର ପୁଷ୍ପଧନୁ
ବଜାଇ ନବ-ଜୀବନ-ବେଣୁ
        କଦମ୍ବର ରୋମାଂଚରେ
        ଆଣିତ ଥିଲି ଫାଲ୍‌ଗୁନ ।

ଅନାଇଁ ନାହିଁ ପଛକୁ ଫେରି
ପଛରେ ଠିଆ ସଂଧ୍ୟାନାରୀ
ରାତିର ଦୂତୀ ଭୟଙ୍କରୀ
ତା ପାଖେ ନାହିଁ ପ୍ରଣୟ ପ୍ରୀତି
କାମନା ତାର ଦୀର୍ଘ ରତି
        ବଂଧ୍ୟା ସେତ, ତା ପାଖେ ଅଛି
                ବିକୃତିର ସ୍ୱୀକୃତି ।
ଶିଳ୍ପୀ ମୁହିଁ ପରାଣକାମୀ
ବିପ୍ଲବୀ ମୁଁ ଜୀବନ-ପ୍ରେମୀ
        ନିହଣ ମୋର ଠୁକୁରୁ ଠୁକୁ
        ଆଂକେ ନୂଆ ମଣିଷ ମୁହଁ ଆକୃତି ।

ବୟସ ଗଲା, ବୃଦ୍ଧ ହେଲି
ଯୁଦ୍ଧ ମୋର ନାହିଁ ତ ସରି

ରୁଦ୍ଧଦ୍ୱାରେ ଆଘାତ କରି
ଜୀବନ ସାରା ଆସିଲି କବି
ଆସିଲି ବାରବାର ।

ସୃଜିଲି ବହୁ କୃଷ୍ଟି, କଳା
ଅସାମ୍ୟର ବିରୋଧେ ପରା
ଲଢ଼ାଇ ମୋର ରକ୍ତଝରା
ଆଜିବି କୋଷେ ପଶିତ ନାହିଁ
ଏ ମୋର ତଲୱାର ।

ପୂର୍ବାଶାର ରକ୍ତ-ତୁଠ
ପ୍ରଭାତ ପଖୀ ପକ୍ଷପୁଟ
ଭୈରବୀର ନାଲିଆ ଓଠ
ରାତ୍ରି ଭୋରେ
ଆଜିବି ମୋତେ ଡ଼ାକେ,
ପ୍ରକୃତିର ଜାଂଗଲିକ-
ସୁଷମା ଗାଏ ମାଂଗଳିକ
ଠିଆ ମୁଁ କବି ହେବାକୁ ଯାଏ
ଅସ୍ତନଦୀ ବାଁକେ ।

ସୂର୍ଯ୍ୟ ତମେ ଥାଅହେ ଥାଅ
ବୀର୍ଯ୍ୟବାନ ହୋଇ,
ଭୈରବୀ ଗୋ ବିଦ୍ରୋହିଣୀ
ବଜାଉଥାଅ
ଉଷାର ସାହନାଇ ।

ଜୀବନ ପରେ ଜୀବନ ଆସୁ

ମରଣ-ଭିଟା ଧସୁରେ ଧସୁ
ପୃଥିବୀ ବୁକେ ହସୁତ ହସୁ
ପ୍ରବଳ ମହାପ୍ରାଣ,
ବହୁ ତ ବହୁ ମୁକ୍ତ ବାୟୁ
ଆସୁ ତ ଆସୁ ଦୀର୍ଘ ଆୟୁ
ସ୍ୱର୍ଗ ଆସି ଧରଣୀ ପାଦେ
କରୁତ କରୁ
ଆତ୍ମ ସମର୍ପଣ ।

ଡ଼ାକନା ମୋତେ ଡ଼ାକନା କେହି
ଏକକ ମୁଁ ଯେ ଅଶ୍ୱାରୋହୀ
ଜୀବନଟାତ ଯୁଦ୍ଧ ମୋର
ଅନ୍ତହୀନ ସଂଗ୍ରାମ,
କ୍ଲାନ୍ତ ଭାରି କ୍ରାନ୍ତିକାରୀ
ଶିବିରେ ଫେରି
ନେବି ମୁଁ ଟିକେ
ବିଶ୍ରାମ ।
□□□

# ହୁଅ ଉର୍ଦ୍ଧ୍ୱବାହୁ

ଅସହାୟ, ଦୁର୍ବଳ, ଦରିଦ୍ର ଆଉ ଭିନ୍ନଧର୍ମା
ନିରପରାଧ ନରନାରୀ,
ସେମାନଙ୍କର ନିଷ୍ପାପ ଶିଶୁ-ଭୋଳାନାଥ
ସମସ୍ତଙ୍କ ଜୀବନକୁ ସଂକ୍ଷିପ୍ତ କରିବାର ରାଜନୀତି
ପିଶାଚର ।
ସେ ରାଜନୀତିର ନାମ ଫ୍ୟାସୀବାଦ ।
ତାର ଦର୍ଶନ-ଜୀବନର ବିପରୀତ ଦିଗର ଦର୍ଶନ ।
ସେ ଦର୍ଶନର ଭାଷ୍ୟ:
ନାରି, ଧର୍ଷିତା ହେବାପାଇଁ ତମର ଜନ୍ମ ।
ତମର କର୍ତ୍ତବ୍ୟ: ସଂଭ୍ରାନ୍ତ, ଆର୍ଯ୍ୟବୀର୍ଯ୍ୟକୁ
ସାଦରେ ଗ୍ରହଣକରି ହେବା ଗର୍ଭବତୀ ।
ତମର କି' ସ୍ୱାଧୀନତା ?
ଫେରିଯାଅ ରୋଷେଇ ଶାଳକୁ,
କମାଣପାଇଁ ଯୋଗାଅ ଖୋରାକ ।

ଚାଳିଶିବର୍ଷ ବୟସପରେ
ମଣିଷ ବଂଚିବ କାହିଁକି ?
ତାର କର୍ମକ୍ଷମତା ହୋଇଆସେ କମ୍,
ତାର ବଂଚିରହିବାଟା
ସମାଜର, ରାଷ୍ଟ୍ରର, ଦେଶର କ୍ଷତି ଏବଂ ବୋଝ ।

ସେମାନଙ୍କୁ ହତ୍ୟା କରାଗଲେ କ୍ଷତି କ'ଣ ?

ମୁଷ୍ଟିମେୟ କିଛି ପୁରୁଷ-ସିଂହ
ଅତି ମାନବକୁ ସୃଷ୍ଟି କରିବାଲାଗି

ଚେଷ୍ଟା କରିବା ଦରକାର ।
ସେଥିପାଇଁ
ଗଣ-ଧର୍ଷଣର ଏକାନ୍ତ ପ୍ରୟୋଜନ ।

ହତ୍ୟା-ଜୀବନର ସଂକ୍ଷିପ୍ତିକରଣ ।
ପ୍ରଭୁତ୍ୱ, ଆଧିପତ୍ୟ, ଦଳନ, ନିପୀଡନ,
କ୍ଷମତାର କରାୟତ୍ତକରଣ
ପୁରୁଷ-ସିଂହର ଧର୍ମ ।
ଏ ଧର୍ମର 'ସଂସ୍ଥାପନ'
ଉଗ୍ର-ଜାତୀୟତାବାଦ
ନାଜୀର ଦର୍ଶନ ।

।।ଦୁଇ।।

ସାରା ଦୁନିଆର,
ତମାମ୍ ଭାରତର,
ଖଣ୍ଡିତ, ଦୁଃଖିନୀ ଓଡ଼ିଶାର ଜନଗଣ,
ନର-ନାରାୟଣ,
ଏ ପୈଶାଚିକତାକୁ ତମେ
ସମର୍ଥନ କର ?
ଯଦି ନକର, ଶୁଣୁଛ ଆର୍ତ୍ତ-ଚିତ୍କାର
ଗୁଜୁରାଟ୍‌ର ?

ଗର୍ଭବତୀର ପବିତ୍ରଗର୍ଭ
ତରବାରୀ, ତ୍ରିଶୂଳେ ବିଦୀର୍ଣ୍ଣ,
ଯୁବତୀର ଯୋନିଦ୍ୱାରେ

ସୁତୀକ୍ଷ୍ଣ-ଛୁରୀକାରେ ଚୁମ୍ବନ,
ମାଇକ୍‌ରେ ବାଜେ ରାମ୍‌ଧୂନ୍‌
ତଳେ ତାର ପାଇକାରୀ ହତ୍ୟା ଆଉ ଖୁନ୍‌ ।

ଧିକ୍କାରର ଭାଷାନାହିଁ,
ନିରୁପଦ୍ରବ-ଶାଂତିର ଆଶା ନାହିଁ,
ନାଜୀ ଧଡ଼ିବାଜ୍‌,
ଗଢ଼ିଛି ତା ରାଜ୍‌ ।
ଏ ହାରାମ୍‌ଖୋର୍‌
ଜ୍ଞାନପାପୀ ଦାଢ଼ିବାଲା ସବ୍‌ ଶାଲା ଚୋର୍‌ ।

ମଣିଷକୁ ହେ ମଣିଷ ତୁହିଁ ରକ୍ଷାକରୁ,
ଶହେ କୋଟି, ହୁଅ ଉର୍ଦ୍ଧବାହୁ,
ସବୁଯାଉ, ମଣିଷ ଥାଉ ।

❑❑❑

ରଚନା କାଳ : ୧୭.୮.୨୦୦୨

# ହୁଅ ହୁସିଆର

ମୁଣ୍ଡଉପରେ ନିର୍ମେଘ, ନୀଳ ଆକାଶ, ଶ୍ରାବଣ ମାସ,
ଦୁର୍ଭିକ୍ଷର ମଧୁଶଯ୍ୟାରେ ପଂଗପାଳର ହସ ।
ଗ୍ରାମ, ଜନପଦେ ଉପାସ, ଅଭାବ, ଭୋକରତ ଲୁଚକାଳି,
ଫୁଲି ଫୁଲି ଉଠେ ଲୁହର ଦରିଆ, ମୃତ୍ୟୁର କରତାଳି-
କାନେବାଜେ ଆସି ସମୀପେ-ସୁଦୂରେ, କିଭଚାଟେ ଦୁର୍ଦ୍ଦିନ,
ଘୋଟି ଆସୁଅଛି ରକ୍ତରମେଘ, ହତ୍ୟାର ବରଷଣ
ତିଆରି ହୋଇଛି ଅନାଗତ ନରମେଧର ଯଜ୍ଞବେଦି,
ଆସେ ଫ୍ୟାସୀଷ୍ଟ, ଆସେ ଜଲ୍ଲାଦ, ନାତ୍‌ସୀର ବୁନିଆଦୀ ।
ଦୂରେ ଦୋରସ୍ତ ଚତୁରେ, ଗୋପନେ, ହଠାତ୍ ଉଠିବ ଝଡ଼,
ପାଣ୍ଡବ ପାଇଁ ତୋଳା ସରିଲାଣି ମୃତ୍ୟୁର ଜଉଘର ।
ଧର୍ମର ଧ୍ୱଜା ତଳେ-
ଏକାଠି ହେଲେଣି ପିଶାଚ-ବାହିନୀ ମଠ ଆଉ ମଂଦିରେ
ଦାଢ଼ିବାଲା ଜ୍ଞାନପାପୀ ଶଇତାନ ଦିଏ ଯେଉଁ ପ୍ରବଚନ
ତାରି ତଳୁ ଶୁଭେ ମରଣ -ବଧୂର ପ୍ରସବର କୁଂଥନ ।

ହୁସିଆର ହୁଅ ହେ ମହା ଜନତା,
ସତର୍କ ନର ନାରୀ,
ସାବଧାନ ହୁଅ ଦେଶର ଯୁଆନ
ବାଧା-ବ୍ୟାରିକେଡ୍ ଗଢି ।
ହଠାତ୍, ଅତର୍କିତ,
କୁଦିତ ପଡିବ 'ଝଟିକା ବାହିନୀ'
ନମିଳିବ ଫୁରୁସତ୍ ।
ନାଜୀର ଯନ୍ତ୍ରେ ମଣିଷର ହାଡ
ଗୋପନେ ହୋଇବ ଚୁନା,

ମାତା-ଭଗିନୀଏ ଗଣଧର୍ଷିତା
ଆର୍ଯ୍ୟବୀର୍ଯ୍ୟ ବାନା-
ଉଡାଇବେ ନାଜୀ 'ଅତିମାନବକୁ'
ଜନ୍ମଦାନିବା ପାଇଁ,
ଯିବ ମାନବତା, ଯିବ ସଭ୍ୟତା
ଇତିହାସ ଯିବ ଧୋଇ ।

ଯାର ପ୍ରତିରୋଧ, ଯାର ଗତିରୋଧ ନାହିଁ ନାହିଁ ପ୍ରସ୍ତୁତି,
ଅଦ୍‌ଭୂତ ଏଇ ଗୁମ୍‌ମରା ଦେଶ, ଜଘନ୍ୟ ରାଜନୀତି ।
ମଣିଷକୁ ସିନା ମଣିଷ ମୁକ୍ତି ଦେଇଅଛି ଚିରକାଳ,
ପ୍ରକୃତିଗତ ଭାବରେ ମଣିଷ ନୁହେଁ କେବେଁ ଦୁର୍ବଳ ।

ହେ ଜଡ-ଭାରତ, ଶହେ କୋଟି ତାର ହେ ଅଭାଗା ଅଧିବାସୀ,
ଆଖିଖୋଲ ସବୁ, କଥାକୁହ ଭାଇ ଦ୍ୱାରେତ ଶତ୍ରୁ ଆସି-
ହୋଇଅଛି ଠିଆ, ସାଥେ ଧରି କଳାରାତି,
ଘଟାଇବାକୁତ ମରଣ ସାଥିରେ ଜୀବନର ହାତାହାତି
ଉଠ ମହାବଳୀ ରାତ୍ରି ବିଦାରି, ନାହିଁ କିଛି ଆନଗତି ।

❑❑❑

ରଚନା କାଳ : ୨୯ ଜୁଲାଇ ୨୦୦୨

# ତାକୁ ମୋ ପ୍ରଣାମ

ଧରଣୀରେ ପାଦ ଦେଉ ନଦେଉଣୁ
ଝଡର ବେହେଲା କାନେ ଶୁଣିଥିଲି ଶିଶୁ,
ଧ୍ୱଂସ-ଧନ୍ୟା-ବନ୍ୟାର ଜଳେ
ନିରପରାଧ ମୋ ନିରୀହ ଜୀବନ
ଅସହାୟେ ଭାସୁ ଭାସୁ-
ଦୁର୍ଦ୍ଦୈବର ଅଜଗର ଅହି
ଚାରିଧାରେ ମୋର
ତାର ବିଷ-କୁଂଡ଼ଳି,
ଘେରିଥିଲା ମୋତେ ଗଢ଼ି ତାର ଘାଟି
ପରେ ହେଲା ମୋର ସେ ନିରାପତ୍ତା
ଶନିର ମେଖେଳା ଭଳି ।

ବଦ୍ଧମୁଷ୍ଟି ମୋର ଉତ୍ତୋଳି
କୁଆଁ କୁଆଁ ରବେ ନିଆଁହୁଳା ଧରି
ବଜ୍ରର ଗରଜନେ,
ଫାଟି ପଡିଥିଲି ମୁଁ ଶିଶୁ-ବିଧାତା
ଅପସୃଷ୍ଟିର ଦରଶନେ ଦରଶନେ ।
ମହା ବିଦ୍ରୋହ ଛାଂଚରେ ମୋର
ଜୀବନଟା ହେଲା ଢଳା,
ଇସ୍‌ପାତେ ହେଲା
ତନୁ, ମନ ମୋର ଗଢା ।
ଆକାଶ ନିଗାଡି ଶୂନ୍ୟର ରସ ମୋତେ ଯେ ପିଆଇଥିଲା,
କୈଶୋର ବେଳୁଁ ଖୋଜୁଛି ମୁଁ ତାକୁ
ମାଆ ଠାରୁ ବଡ, ସେ ମୋ ଜୀବନକୁ

ଦେଲା ଯେ ଦୀକ୍ଷା
ହରାଇବାର ସେ ମହାନ ଶିକ୍ଷା
ଖୋଜୁଛି ମୁଁ କବି ତାରଣ ଶୁଝିବି
ଗୁଂଥି ସାରିଛି ମୋର ହୃଦୟର ଛିନ୍ନ-ଜବାର ମାଳା ।

ଆଜିବି ପାଇନି କବି ମୁହଁ ତାର ଦେଖା,
ସେ ମୋ ଜୀବନର ମହା ଶୂନ୍ୟତା
ତା ପାଇଁ ଆଜିମୁଁ ପୃଥିବୀର ପଥେ
ଏକୁଟିଆ, ଏକା ଏକା ।

କିନ୍ତୁ ସେ ଅଛି, ତାକୁ ମୁଁ ଦେଖିଛି
ଧ୍ୟାନ-ଗୁହା ତଳେ, ସାଧନା ବେଦିରେ ମୋର,
ସେ ମୋ ସକାଳର ସୁର୍, ଭୈରବୀ
ଭାଷାର ଭାରତୀ, ସେ ମୋ ବାକ୍‌ଦେବୀ
ଜୀବନ-ମରଣ ହାତାହାତି କାଳେ
ସେହି ମୋର ତଲ୍‌ୱାର ।
ସେହି ସିନା ମୋର ଯୁଦ୍ଧଜୟର ଗାଥା,
ସେ ମୋ କାବ୍ୟର ମହା ଉପାଦାନ
ସେହି ମୋ ମନ୍ତ୍ର ଅଗ୍ନିବେଦର
ସେହି ମୋର ଲାଲ୍ ଗୀତା ।
ସେହି ମୋ ଆଖିରେ ଲୁହର ଦରିଆ
ଛାତି ତଳେ ମୋର ସେହିତ ଭୂକଂପନ,
ସାମ୍ୟଯୁଗର ଗ୍ରାମ୍ୟ-ବଧୂର ମଧୁର ଭାଷ୍ୟ
ସେ ତ ଅବଗୁଂଠନ ।

ପ୍ରଭଂଜନର ସଉନ୍ଦର୍ଯ୍ୟକୁ ତମେ ଯିଏ ନାହିଁ ଦେଖି,
ଶ୍ୟାମଘନ ମେଘେ

ନୀଲା-ବିଜୁଳିର ପୀତାଭ ଝଲକ, ଧୂମକେତୁ ଜ୍ୱାଳାମୁଖୀ,
ତାହାରି ପ୍ରକୋପ, ପ୍ରତାପ ଦେଖିନ
ଗଢ଼ିବାପାଇଁ କି ଭାଂଗି ଶିଖିନ
ଶୁଣ ଅକର୍ମଶୀଳା,
ମୃତ୍ୟୁର ଋଣ ପରିଶୋଧ ପାଇଁ
ମାନବତା ଆଉ ମଣିଷକି ଆସିଥିଲା ?

ଜୀବନ-ବେଦରେ ଜୀବନବାଦର
ମନ୍ତ୍ର ହୋଇଛି ଲେଖା,
କେତେ ଶତ କୋଟି ଝଡ଼-ତୋଫାନରେ
ନୀଳ-ମୃତ୍ୟୁର ବିଷ-ଫୁତ୍କାରେ
ନିଭିନାହିଁ କେଉଁ ଜୀବନର ଦୀପ ଶିଖା ।

ସେହି ସେ ଶିଖାର ମୁଁ କବି ନାଂଦୀକାର
ଜୀବନକୁ କବି ପ୍ରଣତି ଜଣାଏ
କରେ ମୁଁ ନମସ୍କାର ।
❑❑❑

ରଚନା କାଳ : ୬ ଜୁନ୍ ୨୦୦୩

# ତୁମକୁ ଧନ୍ୟବାଦ

ତମ ଟେଲିଫୋନ୍ 'ଏନ୍‌ଗେଜ୍' କିଆଁ କୁହ,
ରାତି ବାରଟାରେ କାହା ସାଥେ ଆଳାପନ ?
ମନେ ମନେ କବି ଦେଖୁଛି ମୁଁ ତମ ମୁହଁ
ଏଇ ବୟସରେ ତଥାପି କରୁଛ ପ୍ରେମ ?

ଧନ୍ୟ ତମେ ଗୋ, ଧନ୍ୟ ଦେହର ଦାହ
କେ ଫଟାରସିକ-ପ୍ରେମିକ, ପାରେନା ଜାଣି,
ପକ୍ୱକେଶିନୀ ପ୍ରିୟତମା କୁହ କୁହ
ଆଗପରି ଆଉ ନାହଁ ତ ନିତମ୍ବିନୀ ।

ଯଉବନେ ତମେ ଥିଲ ତ ଅଳସ-ହସ୍ତୀ
ସ୍ତନୁ ଉତ୍ତରୀ ଖସୁଥିଲା ଘନ ଘନ,
ରଂଗୀନ୍ ହୋଇ ଉଠୁଥିଲା ସାରା ବସ୍ତି
ଯୁବା ଜନ ମନେ ଥିଲ ତ ଗୁଂଜରଣ ।

ଫିଙ୍ଗିଲା ପରେ ଯୌବନେ ଫୁଲଧନୁ
ଅୟୁତ ଶିଖାରେ ଜଳୁଥିଲାବେଳେ କବି,
ତମେ ଆସିଥିଲ କାମିନୀ ଧବଳଧେନୁ
ଶ୍ଳଥ କରିଥିଲ ତମରି ନିବିଡ଼-ନୀବୀ ।

ମୋ ପଉରୁଷର ନିଆଁକୁ ଧାରଣ କରି
ତମେ ଫେରିଥିଲ ସେହି ଦିନ ନିଶିଭୋରେ,
ସ୍ତନବଂଧନୀ ଯାଇଥିଲ ତମେ ଛାଡ଼ି
ତାକୁ ଦେଖିଥିଲି ତମେ ଚାଲିଗଲା ପରେ ।

ତା ପରେ ଆସିଛ ବହୁବାର ପାଖେ ମୋର
ଫୁଲ ଫୁଟିବାର ଖବର ଦେଇଛ ଆସି,
ସେ ଖବର ମୋର ନଥିବାରୁ ଦରକାର
ମୁହଁ ଫୁଲାଇଛ ପାଖେ ମୋର ବସି ବସି ।

ଜାଳିଛ ମୋ ଆଗେ ଲୋଭନୀୟ ରୂପଶିଖା
କିନ୍ତୁ ପ୍ରେମଟା ହୋଇଛି ପଣ୍ୟ-ପ୍ରେମ,
କେତେ ଦେଲି, କେତେ ପାଇଲି, ହିସାବ ଲେଖା
ସଂଦେହ ଥିଲା, ଶୁଦ୍ଧ ବି ତମ ପ୍ରେମ ?

ସଂଦେହ ମୋର କରିପାରିଲନି ଦୂର
ବିଶ୍ୱ-ପ୍ରେମରେ ମତ୍ତ ମୁଁ ହେଲି କବି,
ବଂଶୀରେ ମୋର ସମାଜ ବଦଳା ସୁର
ପ୍ରେମିକା ମୋ ହେଲା ପ୍ରଭାତର ଭୈରବୀ ।

ପ୍ରତିଦିନ ଭୋରେ ନାଲିଆ ଓଠରେ ତାର
ମୋର ଥର ଥର ଚୁମ୍ବନ ଦେଲି ଢ଼ାଳି,
ଲୋହିତ-ବୃଂଦାବନରେ ବାଜିଲା ମୋର
ବିଶ୍ୱପ୍ରେମର ବଂଶୀଟି ଥରି ଥରି ।

ତମେ କହିଥିଲ ‘ବେରସିକ’ ମୋତେ ସେବେ
ନୀଳନର୍କର ନାୟୀକା, ନିରୋଧବାଳା,
ସଭାରେ ଭାଷଣ ଦେଉଥିଲି ଦିନେ ଯେବେ
‘ସୂଚନା ଭବନେ’ ତମ ଦେଖା ହୋଇଥିଲା ।

ଅନୁରୋଧ ମୋତେ ତମେ କରି ଯାଇଥିଲ
ଔପଚାରିକ ଭାବେ, କରିବାକୁ ଫୋନ୍,

ନିଦ ନ ହେବାରୁ ରାତି ବାରଟାରେ ମୋର
ରିସିଭର୍ ଟେକି ପାଇଲି ଡାଏଲ୍ ଟୋନ୍ ।

ଡାଏଲ୍ କରି ମୁଁ ଘାଏଲ୍ ହୋଇଲି କବି
ଫୋନ୍ ଏନ୍‌ଗେଜ୍ ପୁରା ଘଣ୍ଟାଏ ଧରି,
ରାତି ଗୋଟାଏରେ ପୁଣି ଥରେ ବାଂଧବୀ
ରିସିଭର୍ ଟେକି ତମକୁ ମୁଁ ଫୋନ୍ କଲି ।

'ହାଲୋ, କିଏ ସେ?' କହିତ ବିରକ୍ତିରେ
ପ୍ରୌଢ଼ା-ରାଧା ଗୋ, ଘଟଣା ମୁଁ ବୁଝିଗଲି,
ସଂଭୋଗ-ଶିଖା ତମ ଜଳୁଥିଲା ବେଳେ
ରିସିଭରଟିକୁ ରଖିଦେଇଥିଲ ନାରୀ ।

ବନ୍ୟ-ଛାଗଳୀ, ପଣ୍ୟ-ପ୍ରେମିକା, ହାୟ
ଧନ୍ୟ ତମେ ଗୋ, ଧନ୍ୟ ବନ୍ୟବାଦ,
ଶୁଦ୍ଧ ପ୍ରେମର ଘଟାଇଛ ପରାଜୟ
ବୃଦ୍ଧ କବିର ତମକୁ ଧନ୍ୟବାଦ ।

❑❑❑

ରଚନା କାଳ : ୧୯.୯.୨୦୦୩

# ନିଶ୍ଚିତ

ବଂଧୁକଙ୍କୁ ଯେ ବଂଧୁ କରିଛ ପୁଲିସ ଓ ମିଲିଟାରୀ,
ଦମନଯନ୍ତ୍ର ମାଲିକ ବନିଛ ତମେ ଯେତେ ପାପାଚାରୀ,
ସୁନାବାଡି ଆଉ ପାଟଛତା ତଳେ
ତମେଯେ ବସିଛ ସିଂହାସନରେ
ଧଳାହାତି ଯୂଥ, ଅମଲାତନ୍ତ୍ରେ ନିଜ ହତିଆର କରି,
ପରଧନ ଖାଇ ଉମର କଟାଅ ତମେତ ଅତ୍ୟାଚାରୀ ।

ହାତ ଗଣତିରେ ସଂଖ୍ୟା ତମର, ତମେ ତ କାଗଜ-ବାଘ,
ମାନବ ଜାତିର ତମେ ଦୁଶ୍‌ମନ୍, ଧରଣୀର ଦୁର୍ଯ୍ୟୋଗ ।
କ୍ଷମତା ମଦରେ ତମେତ ମାତାଲ୍
ସଂସ୍କୃତି ତମ 'ଭାଟି-କଲଚର୍'
ନୋଅଟ ଭେଳାରେ ଭୋଅଟ ବେପାର, ଦୁର୍ନୀତି ତମ ରୋଗ,
ବେଗର୍ ମାଡରେ ସାବାଡ୍ ହୁଅନା, କରୁଥାଅ ସବୁ ଭୋଗ ।

ରକ୍ତ ଶୋଷଣେ ନିଜ ଭାଗ୍ୟକୁ ନିଜେତ ଗଢ଼ିଛ ଯୋକ,
ତମରି ବଂଶ ନିପାତ ନ ହେଲେ ଯିବନାହିଁ ମୋଟେ ଭୋକ ।
        ଅସମାନତାର ଦୁର୍ଗତୋରଣ-
        ମାନବଜାତିର ଶେଷ ମହାରଣ-
ନ ହୋଇଲେ ସୁରୁ, ମରିବେନି କୁରୁ, ଖସିବନି ନିର୍ମୋକ,
ଜନାରଣ୍ୟରେ ଘୁରି ବୁଲୁଥିବେ ଧଡିବାଜ୍ ପ୍ରତାରକ ।

ଗରୀବ ମାଇପ କେତେକାଳ ଆଉ ହୋଇଥିବ ତମ 'ଶାଳୀ'?
ଗଡୁଥିବ ତମ କୂଟ-ଶକୁନୀର କେତେକାଳ ପଶାପାଲି ?
ତମେ ତୋଳିଥିଲ ଯେତେ ଜଉଘର

ସେତ ଜଳିଗଲା, ମଣିଷ ଅମର
ଠାବ ଦେବନାହିଁ ମାନ ସରୋବର କହିଥିଲା ମୁହଁ ଖୋଲି,
ଶୁଣିଛ, ଶୁଣିବ ଇତିହାସ ତଳୁ ପୁଣି ଭୀମ, କାଳରଡି ।

କୌରବହୀନ ହେବ ଏ ଧରଣୀ ଆଜିବି ନହେଲେ କାଲି,
ମଣିଷ କାମ୍ୟ ସାମ୍ୟ ସମାଜ ଆସିବତ ଅବତରି ।
ତମାମ୍ ପୃଥିବୀ ହେବ ଏକ ଦେଶ
ଶୋଷଣବାଦର ହେବ ହେବ ଶେଷ
କାରାଗୃହରେ, ଫାଶୀର ମଂଚେ ଝୁଲିବେ ଅତ୍ୟାଚାରୀ,
କ୍ଷେତ, ଖଳାବାଡ଼ି ହୋଇବ ହୋଇବ ଫୁଲର ଫସଲେ ଭାରୀ !

ପାଟିତ ଖୋଲିବ ମାଟିର ଦୁଲାଳ, ତା ଭାଷା ଶୁଣିବ ତମେ,
ତା ଭାଷା ଫୁଟିବ ବିଜୁଳି ଝଲକେ, ବଜ୍ରର ଗରଜନେ ।
ତଳଟା ଆସିବ ଉପରକୁ ଉଠି
ଉପରଟା ସିନା ଯିବ ତଳେ ଲୋଟି
ମହା ମଂଥନେ ମରିବ ମରିବ ଦୁଷ୍ଟକୀଟହେ ତମେ,
ଇଏତ ଶପଥ ନଥିଲାବାଲାର ସାମ୍ୟ-ସମାଜ ନାମେ ।

ତମ ସୁନାବାଡ଼ି, ତମ ପାଟଛତା, ତମରି ସିଂହାସନ,
ତମ ବଂଧୁକ, ତମରି ପୁଲିସ, ପିଆଦା ଓ ପଲଟଣ,
ମହାଜନତାର ବିଶ୍ୱରୂପର
ପାଦରେ କରିବ ଅବନତ ଶିର
ତମରି ଛାତିକୁ ନିଶାଣ କରିବ ତମରିତ ସଂଗୀନ,
ସେଦିନ ଆସିବ ଦିନେ ଅଲ୍‌ବତ୍, ସ୍ୱପ୍ନଟା ରଂଗୀନ୍-

ସରିତ ନଥିବ, ରାତି ପାହିଯିବ, କାହିଁଯିବ ବାପଧନ,
ଗାଉଥିବ ତମ ସ୍ୱାଗତ ଗୀତିକା ସମ୍ମୁଖେ ଶମଶାନ ।

ଶତ-ଶହୀଦର ଲାଲ୍ -ଉତ୍ତରୀ
ଉଡ଼ିବ ପତାକା ଢେଉ ତାର ତୋଳି
ଆକାଶ, ଅବନୀ କଂଠୁ ଶୁଭିବତ ମଣିଷର ଜୟଗାନ,
ବିହଗ କୂଜନେ ଭାସିତ ଆସିବ 'ଜୟ ନବ-ଉତ୍ଥାନ' ।



ରଚନା କାଳ : ୧୫ ଅଗଷ୍ଟ ୨୦୦୨

# ପ୍ରଣାମ କମ୍ରେଡ୍

(କମ୍ୟୁନିଷ୍ଟ ନେତା ନଂଦକିଶୋର ପଟ୍ଟନାୟକଙ୍କ ବିୟୋଗରେ...)

ଜୀବନରେ ଦିନେହେଲେ ଅବନତ କରିନ ପତାକା,
ହେ ସାଥୀ, ହେ ବରିଷ୍ଠ , ହେ କମ୍ରେଡ୍, ସଖା
ବିପ୍ଳବର ସାମଗ୍ରୀକ ଯୋଗ,
ତମେ ତାର ଥିଲ ଯୋଗୀ
ହେ ଦୁର୍ମଦ, ତମ ଗତିବେଗ,
ସବୁ ମୋ ଦେଖିଛି ଆଖି
ତମ ସ୍ନେହେ ହୋଇଛି ମୁଁ ଧନୀ,
ଦୁର୍ଦ୍ଦୈବକୁ ନାଦ୍ ମାରି
ଛିନ୍ନକରି ବକ୍ରର ଧମନୀ,
ତମେ ଚାଲିଥିଲ ବାଟ
ଫେରିନାହଁ ହେ ଅଗ୍ରପଥିକ,
ତମେ ମୋ ବିପ୍ଳବୀ-ସ୍ମୃତି
ମନେ ମୋର ଲାଲ୍-ଶିଳାଲେଖ ।

ମୋ ରଚିତ ଅଗ୍ନିବେଦେ କେତେ ଗୋଟି ମନ୍ତ୍ର ଥିଲ ତମେ,
ତମକୁ ଦେଖିଛି କବି, ତମେ ମୋତେ ଦେଖିଛ ସଂଗ୍ରାମେ ।
ହେ ପ୍ରବଳ ପ୍ରାଣ,
ରୂପାନ୍ତର ମାଧ୍ୟମରେ ବସ୍ତୁ-ସତ୍ତା ହେଲା ତମ ଲୀନ ।
ପ୍ରଗତିର ସରଣୀ ନିର୍ଜ୍ଜନ,
ଅଧିକୁଁ ଅଧିକ ହେଲା, ତମକୁ ମୋ ଲୋହିତ ପ୍ରଣାମ ।

ସ୍ମୃତି ତବ ଲଭୁ ଦୀର୍ଘ ଆୟୁ,
ବୈପ୍ଳବିକ ଆଦର୍ଶର ଶିରା ଆଉ ସ୍ନାୟୁ
ହୋଇଉଠୁ ଅଧିକ ସ୍ପନ୍ଦିତ,
ତମ ତ୍ୟାଗ, ତମ ଯୁଦ୍ଧ
ଲେଖୁ ତାର ନୂଆ ଉପୋଦ୍‌ଘାତ ।

❑❑❑

ରଚନା କାଳ : ୩୦.୧୦.୨୦୦୩

# ହିଟ୍‌ଲର୍‌ର ଉକ୍ତି

କରିତ ନଥିଲି ଆତ୍ମହତ୍ୟା,
ଥିଲି ଅଜ୍ଞାତବାସେ,
ଚୂନାହେଲା ସିନା ବର୍ଲିନ୍-ଗଡ
ଧରଣୀର ଦେଶେ ଦେଶେ-
ମୁହିଁ, ମୋ ସତ୍ତା, ନାଜୀ-ମତବାଦ
ଟେକିଛି କିପରି ଫଣା,
ଦେଖୁଛନା ନାହିଁ, ଜୀବନ ହେଉଛି
କେଉଁପରି ବାଟବଣା ?

ସବୁରି ଧାରଣା : ମୁଁ ତ ଜୀଇନାହିଁ, ନାହିଁ ତ ନାଜୀର ସତ୍ତା,
ନିଧଡକ୍ ଭାବେ ଗଢା ହୋଇଅଛି 'ପରିଷଦ-ନିରାପତ୍ତା' ।
ହସି ପେଟଫାଟେ, ଦୁର୍ବଳ ସବୁ ଭାଣ୍ଡ-କାରଖାନା ଦେଖି,
ନାଜୀବାଦ ହେଲା ବିପରୀତ ଦିଗ, ଜୀବନର ଜ୍ୱାଳାମୁଖୀ ।
ଜୀବନଟା ସିନା ହେଲେ ବଳଶାଳୀ, ମୃତ୍ୟୁର ପରାଜୟ-
ହୁଏ ସମ୍ଭବ, ଜୀବନର ଆଜି ଘଟୁଛି ଅବକ୍ଷୟ ।

ସମରବାଦ ଓ ଆଧିପତ୍ୟଟା ନାଜୀ ସାହାଯ୍ୟକାରୀ,
ଜର୍ମାନୀରେତ ନାଜୀ-ମତବାଦ ଥିଲା କାୟା ବିସ୍ତାରି ।
'ସମାଜବାଦ'ର ରୋଚକ -ଶବ୍ଦ ଆମେ ଘୋଷିଥିଲୁ ନାଜୀ,
ଗଢ଼ିଥିଲୁ ଆମେ ମୃତ୍ୟୁବାହିନୀ, ଜୀନବନକୁ ଖୋଜି ଖୋଜି,
ବୁଲିଥିଲୁ ଆମେ ଦୁନିଆଁ ତମାମ୍ ଧରି ସ୍ୱସ୍ତିକ-ନେତ,
ମସ୍କୋର ପଥେ ଛୁଟିଯାଇ ଆମେ ହେଲୁ ସିନା ପରାଭୂତ ।

ଆମେ କେହି ନାହୁଁ ମରି,
ନାଜୀର ସତ୍ତା ପୁଉଣିତ ଯିବ

ସାରା ଧରତୀକୁ ଘେରି ।
ନାହିଁ ନାହିଁ ଆଜି ଯୋସେଫ୍ ଷ୍ଟାଲିନ୍
ନାହିଁ ତାର୍ ଲାଲ୍‌ସେନା,
ନାହିଁ ସୋଭିଏଟ୍, ଉଡୁନାହିଁ ଆଉ
ଦାଆ-ହାତୁଡିର ବାନା ।
କିଏ ଠିଆହେବ ସାମ୍ନାରେ ଆମ
ଦେଶେ ଦେଶେ ସଂତ୍ରାସ,
ତାରି ତଳେ ଅଛି ନାଜୀର ତତ୍ତ୍ୱ
ଶ୍ୱାସ ଆଉ ପ୍ରଶ୍ୱାସ ।

ଆମ 'କୋବିସିଲି' (୧) ଭାରତବର୍ଷେ ହୋଇ ସାରିଲାଣି ଗଢ଼ା,
ଗୁଜୁରାଟ୍ ହେଲା ତାହାରି ପ୍ରମାଣ, ସେ ଆମ 'ପ୍ରୟୋଗଶାଳା' ।
ଅନାର୍ଯ୍ୟ ସବୁ ବଂଚିବେ କିଆଁ ? ତାଂକୁ ଖତମ୍ କର,
ଯୁବତୀ-ଯୋନିରେ ଆର୍ଯ୍ୟ-ବୀର୍ଯ୍ୟ ଜବରଦସ୍ତ ଢାଳ ।
ଦଂଗା, ହତ୍ୟା, ଧ୍ୱଂସ, ମୃତ୍ୟୁ ପରେ ପରେ ଅବତରୀ-
ଆସିବେ ନିଶ୍ଚେ ସେ 'ଅତିମାନବ', ଯାହା ଅତି ଦରକାରୀ ।

କରିମୁଁ ନଥିଲି ଆତ୍ମହତ୍ୟା
ସେହି ହିଟ୍‌ଲର୍ ମୁହିଁ,
ଥିଲି ମୁଁ ଜୀବିତ କରି ଅପେକ୍ଷା ।
ଆଜିର ସୁଯୋଗ ପାଇଁ ।
ଥିଲା ମୋର ଯେଉଁ 'ଝଟିକା-ବାହିନୀ'
ଥିଲେ ସେନାପତି-ଥାଟ,
ବହୁକାଳପରେ ସମସ୍ତେ ଆଜି
ମିଳିତ ଓ ଏକଯୁଟ,
ଗୋଏରିଂ, ହେସ୍, ଗୋବେଲ୍‌ସ୍, ରୋମେଲ୍

ଦକ୍ଷ ରିବେନ୍‌ଟ୍ରପ୍
କିଏସେ କହୁଛି ନାଜୀ-ନାଟକର
ସିନ୍‌ଟା ହୋଇଛ ଡ୍ରପ୍ ?

ଭାରତରେ ମୋର ନାଜୀ 'ଗେଷ୍ଟାପୋ'(୨) ଯାଇତ ଛନ୍ତି ଖେଦି,
ଦୃଢ଼ମୂଳ ହେବ ଆର୍ଯ୍ୟାବର୍ତ୍ତେ ନାତ୍‌ସୀର ବୁନିଆଦୀ ।
ଐତିହାସିକ-ହିଂଜଡା ଆମେ, ଲୋଡାନାହିଁ ଆମ ପ୍ରେମ,
ଆମ ଗତିପଥେ କାମ୍ୟ ଆମର ଶ୍ମଶାନ, 'ଗୋରସ୍ଥାନ'(୩) ।
ଜୀବନବିରୋଧୀ, ମାନବତାଘାତୀ 'ଅତି-ମାନବ'ର ପୂଜା-
କରିବାକୁ ମୁହିଁ ଉଡାଇ ଚାଲିଛି ନାଜୀ ସ୍ୱସ୍ତିକ ଧ୍ୱଜା ।

❑❑❑

ରଚନା କାଳ : ୨୨ ଜୁଲାଇ ୨୦୦୨

*(୧)'କୋବିସିଲି'-ବଧ୍ୟଭୂମି । (୨)'ଗେଷ୍ଟାପୋ'-ନାଜୀ ଜର୍ମାନୀର କୁଖ୍ୟାତ ଗୋଏଂଦା । (୩) 'ଗୋରସ୍ଥାନ'-କବର ।*

# ଯେତେଦିନ ଯାଏଁ...

ଭୋକରେ ମଣିଷ କରଡି ଜଳୁଛି, ଗାଆଁରୁ ପଳାଏ ଲୋକ,
ଗ୍ରାମପଥେ ନାହିଁ ଶିଶୁ କଳରବ, ଶୁଷ୍କ ଆକାଶ ମୁଖ ।
ମୌସୁମୀ ଆଜି ପଛକୁ ହଟିଛି ପରାଜିତ ସେନା ପରି,
ବସୁଧାବକ୍ଷେ ଉଜୁଡା କ୍ଷେତରେ ମରୁଡିର ଲୁଚକାଳି ।
ଇଂଦ୍ର ଦେହରେ ସିଫଲିସ୍ କ୍ଷତ, ବଜ୍ର ବଧିର ତାର,
ମେଘ ଉଠାଉଛି, ବର୍ଷାତ ନାହିଁ, ନଟା-ବିଜୁଳିର ଖେଳ ।

ସବୁ ହତଶୀରି, ସଭିଏଁ ସର୍ବହରା,
ଆଦ୍ୟ-ଆଷାଢ କେବେଠୁଁ ଗଲାଣି, ଶ୍ରାବଣର ବାରିଧାରା-
ନାହିଁ, ଦେଖାନାହିଁ, ପବନ -ରନ୍ଧ୍ରେ ଗୁଳୁଗୁଳି ଆଉ ତାତି,
ଭାରସାମ୍ୟ ତ ହରାଇ ଦୋହଲେ ପାଗଳିନୀ ପ୍ରକୃତି ।
ବନଭୂମି ପଦା, ବିହଂଗମର କାକଳି ଯାଉନି ଶୁଣା,
ଗୋରୁ ଗାଈମାନେ ହାଡ-କଂକାଳ, ମଡକ ପିଟୁଛି ଡେଣା ।
ଦୁର୍ଭିକ୍ଷର  ମଧୁଶଯ୍ୟାରେ ମରଣ-ବଧୂର ରତି,
ବାହାରରେ ଚାଲିଛି ଲପଂଗୀକୃତ ମନି-ଯୋନି-ରାଜନୀତି ।
ଆଶା ଗଲା, ଗଲା ଭାଷା, ସଂସ୍କୃତି, ଅନୀତିଟା ହେଲା ପେଶା,
ରାମ ନାମ ହେଲା 'ସତ୍ୟ' ପ୍ରମାଣ, ଯୋକର ଅଂକା କଷା ।

ସମାଜ-ଜୀବନେ ନାହିଁ ଘନଘଟା, କିଛିବି ଆନ୍ଦୋଳନ,
ଦେଉଳ ତୋଳାର ରାଜନୀତି ଅଛି, ଅଛି ଖାଲି ରାମନାମ ।

ନୀରବେ ନୟନୁ  ଲୋତକ ଢାଳୁଛି ଜନନୀ ଉତ୍କଳିକା,
ସଂତାନ ତାର ସବୁ ଅମଣିଷ, ସବୁ ତ ପଶୁରେ ଲେଖା ।
ଦିଲ୍ଲୀଶ୍ୱରର  'ହାରେମ୍'ର 'ଖୋଜା' ସବୁତକ ଖଲିଚଟା,

ବେତନଭୋଗୀତ ଚିଂତା-ଚେତନା, ସବୁ ବେଇମାନ୍, ଝୁଠା ।
ନିଜ ସଂପଦ ବର୍ଗୀକୁ ଦେଇ 'ଅନୁଦାନ' ପାଇଁ ଥାଳ-
ଧରି ଭିକ୍ଷୁକ ଠିଆତ ଓଡ଼ିଆ, ଖଡ ଖଡ ହାଡମାଳ ।
ଜାତିପ୍ରାଣ  ମାନେ କେହି ନାହାଂତି, ଅଛନ୍ତି ଭାଟିପ୍ରାଣ,
ଧକଡ ଧକଡ ଶାସନର କଳ, ଶାସକ ଫକଡରାମ ।

ଓଡ଼ିଶା ଦେଶକୁ ଆଂଧ୍ର, ବିହାର ପାଖରେ ବଂଧା ରଖି,
ଚାଲରେ ଓରିଆ ଦାଦନ ଖଟିବା ଦେହ-ମିହନତ ବିକି ।
ପଡିଥାଉ ଘର ଡିହ,
ଯେତେ ଅଛ ତମେ ବିଲୁଆ, କୁକୁର, ଆସ, ତା ଉପରେ ଡିଅଁ ।
ଗରୀବର ନାହିଁ ଦେଶ ଓ ରାଷ୍ଟ୍ର, ପ୍ରଦେଶ ଅଥବା ଗ୍ରାମ,
କଂଠେ ଅଛି ତା ଶ୍ରମ-ସଂଗୀତ, ଦେହେ ମିହନତ ଶ୍ରମ ।
ତାକୁ ବିକି ଖାଇ ଶେଷେ ସେ ଶୋଇବ ମରଣ-ଚରଣ ତଳେ,
ଏଇତ ଶୋଷଣବାଦର ମହିମା ପୁଂଜିର ଦୁନିଆରେ ।

ଭୋଅଟ ବାଟରେ ଏତ  ଭାଂଗିବନାହିଁ,
ଅଂଧାର ହେବ ଆହୁରି ନିବିଡ, ଆସୁଛି ସେ ଦିନ ଏଇ ।
ଯେତେଦିନଯାଏଁ ମଣିଷ ଧରିନି ତା ନିଜ ବିଶ୍ୱରୂପ,
ସେତେଦିନଯାଏଁ  ଭାଂଗିବନାହିଁ ଶୋଷଣବାଦର ଯୂପ ।



ରଚନା କାଳ : ୨୫ ଜୁଲାଇ, ୨୦୦୨

# ମଣିଷ ଫେରିବ

ମଣିଷ ଯାଇଛି, ମଣିଷତ ଫେରିନାହିଁ
ଫେରିବାବେଳକୁ ଜୀବୀତ ନଥିବି କବି,
ମାନବତାପାଇଁ ଲଢ଼ାଇ ମୋ ସରିନାହିଁ
ମାନବବାଦର ଦେଖୁଛି ଅସ୍ତ ଛବି ।

ସେ ମହାସମରେ ହରାଇଛି ମୋର ଆଖି
ଲହୁର ଦରିଆ କରିଛି ସନ୍ତରଣ,
ପାଲଟିଛି କବି ଧୂମକେତୁ, ଜ୍ୱାଳାମୁଖୀ
ସେ ମଣିଷ ଠାରୁ ଶିଖିଛି ବିଶ୍ୱପ୍ରେମ ।

ରକ୍ତ, ଅଗ୍ନି, ଗୁଳିଘାତ, ଲହୁଟୀକା
ବୋମା ଟୁକୁରାରେ କ୍ଷତ-ବିକ୍ଷତ ଦେହ,
ତାହାରି ଭିତରେ ଦାନବ ବିରୋଧୀ ଶିଖା-
ଜାଳିଛି, ମଣିଷ ଦେଇଛି ତ ବରାଭୟ ।

ମଣିଷର ମେଧା, ହାତଯଶ ଆଉ କଳା
ଶ୍ରମ-ସଂଗୀତ ବେଣୁରେ ମୋ ହୋଇ ସୁର୍,
ସେ ସୁର୍ ହୋଇଛି କାବ୍ୟ-ଛାଂଚେ ଢଳା
ଭାବର ଆବେଗେ ହୋଇଛି ମୁଁ ମସ୍‌ଗୁଲ୍ ।

ସାବାଳକ ହୋଇ ଜନ-ଅରଣ୍ୟ ଭିଡେ
ମଣିଷର ହୃଦ-ଦୁଂଦୁଭି ଅଛି ଶୁଣି,
ଆଗୁଁସାର ହୋଇ ଘାତ-ସଂଘାତ, ଝଡେ
ମଣିଷ ମୁହଁରୁ ଶୁଣିଛି ଅମରବାଣୀ ।

ମଣିଷ ଉପରେ କେହିନାହିଁ ବଡ଼, ସତ୍ୟ
ମଣିଷ ହିଁ ନିଜେ ମଣିଷର ଦର୍ପଣ,
ମାନବଜାତିର ଐତିହାସିକ ତଥ୍ୟ
ମାନବବାଦର ନବ ନବ ଉତ୍‌ଥାନ ।-

ତାକୁ ମୁଁ ଦେଖିଛି, ପଢ଼ିଛି, ଲେଖିଛି କବି
ମଣିଷପାଇଁ ମୁଁ ବିନୟୀ ଅସ୍ତ୍ରଧାରୀ,
ମାନବର ଧାରା, ପଛେ ମୋର ଜାହ୍ନବୀ
ସେ ମୋତେ କରିଛି ଭଗୀରଥ, ମହାବଳୀ ।

ଯୁଦ୍ଧ କରି ମୁଁ ବୃଦ୍ଧ ହୋଇଚି ଆଜି
ଅସହାୟ ଲାଗେ, ମଣିଷ ଯାଇଛି ଚାଲି,
ମଣିଷ ଆସନ ଦଖଲ କରିଛି ପାଜି
ଚିରା-ସଭ୍ୟତା ଉପରେ ପକାଏ ତାଳି ।

ଅପସଂସ୍କୃତି ପଥେ ଘାଟେ ବାଟେ ଜିଭ
ସାରା ଦୁନିଆଁଟା ଅଭାବର ମରୁଭୂମି,
ନୀତି ପାଲଟିଛି ଶୋଷଣବାଦ ଓ ଲୋଭ
ବିଶ୍ୱ-ନରକେ ବିଜି ବିଜି କୀଟ କୃମି ।

ତାଂକ ଗଳାରେ କେବେହେଲେ ଜୟମାଳା-
ଦେଇପାରିବିନି, ଦେଲେ ହାତେ ଯନ୍ତ୍ରଣା,
ଜଳିବ ହୃଦୟେ ବିବେକ-ବିରୋଧୀ ଜ୍ୱାଳା
ଝଂକାରହୀନ ହେବ ମୋ ଅଗ୍ନିବୀଣା ।

ମଣିଷ ଫେରିବ ଧରି ମାନବତା ନେତ
ତା ସାଥେ ଫେରିବେ ମାନୁଷୀ ବୀର୍ଯ୍ୟବତୀ,

ଗାଇ ଗାଇ ସବୁ ସାମ୍ୟ, ସମତା ଗୀତ
ଆସିବେ ତରୁଣ ରଥୀ ଆଉ ମହାରଥୀ ।।

ଲେଖିଯାଉଛି ମୁଁ ତାଙ୍କରି ସ୍ୱାଗତିକା
ପଶ୍ଚିମ ପଥେ, ଅସ୍ତ-ସାଗର କୂଳେ,
ଜଳିବ ନିଶ୍ଚେଁ ଉଦୟ ଅରୁଣ ଶିଖା
ଆସିବେ ଯାତ୍ରୀ ରାତ୍ରିର ଅବସାନେ ।

ହୋଇଥିବି ସେବେ ସକାଳର ଲାଲ ମେଘ
ଭୈରବୀ ସୁରେ ଗାଇ ଉଠୁଥିବି ଗୀତ,
ଦେଖିବ ଆକାଶ ନବସୃଜନର ଯୋଗ
କଲମ କରେ ମୋ ସେ ମଣିଷେ ପ୍ରଣିପାତ ।

❑❑❑

ରଚନା କାଳ : ୨ ନଭେମ୍ବର, ୨୦୦୩

# ଆମେ ଭଲପାଉ...

ହାଡ଼ରେତ ନାହିଁ ଟିକେନି ମାଉଁସ, ଆମେ ନର-କଂକାଳ,
ଜୀବନଟା ଆମ ଭୋକର ସାହାରା, ଚାରିପାଖେ ବାଲିଝଡ ।
ଓଟପରିଚାଲୁ , ଆମେ କୁଂଥାଉ
ମରୁଦ୍ୟାନର ଦେଖାତ ନପାଉ
ମରୁସୂର୍ଯ୍ୟର ବୀର୍ଯ୍ୟରେ ଆମେ ସଭିଏଁ ବୀର୍ଯ୍ୟବାନ,
ମରଣ-ତୋରଣେ ଆମେତ ଲେଖିବୁ ଜୀବନର ଜୟଗାନ ।

ଆମେତ ମଣିଷ, ଆମ ଇତିହାସ କୀରତି-କ୍ରାନ୍ତିମଖା,
ଆମ ହାତଯଶେ ଶ୍ୟାମଳ-ଗ୍ରହର ସୁଂଦର ରୂପଶିଖା ।
ଆମ ମିହନତ, ଝାଳର ଗଂଧେ,
ଆମରି କୋଦାଳ, ଦାଆର ଛଂଦେ
ପଥର ଛାତିରେ ଫୁଲ ଫୁଟିଉଠେ, କ୍ଷେତରେ ଫସଲ-ଶିଖା,
ଆମେତ ବୁଡ଼ିଛୁ ସାଗର ଅତଳେ, ତୋଳିଛୁ ଅଟ୍ଟାଳିକା ।

ଆମେତ ଗଢ଼ିଛୁ ଉଆସ, ନଅର, ରାଜପଥ, ରାଜଧାନୀ,
ପଶିଛୁ ପାତାଳେ କାଟିଛୁ କୋଇଲା ମାଟିର ଅନ୍ତ ଟାଣି ।
ଆମେ ସେହିମାନେ ନର-ନାରାୟଣ
ଯା ପରାମର୍ଶେ ବୀର ଅର୍ଜୁନ
ମହା ଜଡ଼ତାର ବଦ୍ଧପଂକ ଭିତରୁ ତ ଥିଲା ଉଠି,
କରିବାପାଇଁ କି କୌରବହୀନ ଭାରତ ଧରଣୀ ମାଟି ।

ଆମେ ସେ ମଣିଷ, ଆମ ମାନବତା ଠାରୁ କେହିନାହିଁ ବଡ,
ଧରା-ଉଦ୍ୟାନେ ଆମେସବୁ ହେଲୁ ସ୍ଥଳପଦ୍ମର କଢ ।
ଆମେ ଅଷ୍ଟମ ଦେବକୀ-ଦୁଲ୍ଲାଳ

କଂସ-କାରାରେ ଜନ୍ମ ଆମର
ଶ୍ୟାମଘନଦେହୀ ଆମେ ମେଘମାଳା, ଅବାରିତ ବାରିପାତ,
ଆମେତ ସଂଥ, ଜୀବନ-ଗ୍ରଂଥେ ଆମେତ ଉପୋଦ୍‌ଘାତ ।

ମଣିଷ ଭିତରେ ମଣିଷ ତିଆରି ଥିଲା ଓ ନଥିଲାବାଲା,
ଯାକୁ ଆମେ ଶେଷ କରିବାପାଇଁ କି ଲଢ଼ିଛୁ ଦୁନିଆସାରା ।
ଶୋଷଣ-ସାହାରା ହେବୁ ଆମେ ପାରି
ସମର-ଶିଖାରେ ଆମେ ଜଳି ଜଳି
ଝଡର ମଥନେ ଆସନ ପାତିବୁ ସାମ୍ୟସମାଜ ପାଇଁ,
ମରୁ-ସାହାରାର ଏ ହାହାକାରକୁ ଆମର ଖାତର ନାହିଁ ।

ଧନତନ୍ତ୍ରର ଜଂଜିର ଛିଡା ଝଡରବାହକ ଆମେ,
ଜନନୀ-ଜଠରୁ ଶପଥ ଘେନିଛୁ ବିଶ୍ୱମୁକ୍ତି ନାମେ ।
ଫାଇଟ୍ ଫାଇଟ୍, ଲେଫ୍‌ଟ୍ ରାଇଟ୍
ଏଗେନ୍ ଆଟାକ୍, ଏଗେନ୍ ଫାଇଟ୍
ଉପରକୁ ତଳେ, ତଳକୁ ଉପରେ ଉଠାଇ ଆଣିବାପାଇଁ,
ଲଢ଼ିବୁ-ହାରିବୁ, ପୁଣି ଲଢ଼ିବୁ ପୂର୍ଣ୍ଣ ବିଜୟ ପାଇଁ ।

ଆମ ସ୍ୱାଗତିକା ଗାଏ ବିଜୟିନୀ, ଆକାଶେ ରକ୍ତତାରା,
ନଦନଦୀ, ମରୁ, ସମୁଦ୍ର, ଗିରି, ଏ ଧରଣୀ ସସାଗରା
ମାନବବାଦର ଆମେ ମହାବାଣୀ
ଆମେ ଛିଡ଼ାଇବୁ ବଜ୍ର-ଧମନୀ
ଆମେ ଘଟାଇବୁ ନିଶ୍ଚିତ ଦିନେ ମୃତ୍ୟୁର ପରାଜୟ
ଆମେ ଭଲପାଉ ମଣିଷର ଆୟୁ, ସମାଜ ସାମ୍ୟମୟ ।

❑❑❑

ରଚନା କାଳ : ଜୁଲାଇ ୨୬, ୨୦୦୨

# ଝଡ଼ର ଦେଉଳ ଦ୍ୱାରେ

'ଲବି' ପଟୁ-କବି ତମକୁ କରିଛି
ଲଜ୍ଜିଂ-ବାସିନୀ ଦେବୀ,
ସାରସ୍ୱତର ଶାଶ୍ୱତ ଦୀପ
ଧୀରେ ଧୀରେ ଆସେ ନିଭି ।
ନାହିଁ ଝଙ୍କାର, ଭାଙ୍ଗିଛି ବୀଣା
କବିତା ହୋଇଛି ଗଦ୍ୟ,
ଅକବି ଦଳର ପାନପାତ୍ରରେ
ଢଳ ଢଳ ହୁଏ ମଦ୍ୟ ।
କବି ଓ ଲେଖକ ପାଲଟିଛି ଆଜି
ସ୍ଥିତାବସ୍ଥାର ଗଧ,
ଦୁନିଆଁର କଥା, ମଣିଷର ବ୍ୟଥା
ତାର ସଂଗ୍ରାମ-ବେଦ-
ଲେଖିବାକୁ କାର ନାହିଁ ତ ସାହସ
ପ୍ରତିଭା ହୋଇଛି ବଂଧ୍ୟା
ଇତିହାସ ଚକ ପଛକୁ ବୁଲୁଛି
ଘନାଇଛି କାଳସଂଧ୍ୟା ।

ଜନାରଣ୍ୟରେ ପଶୁ ମହାବଳ ପଶିଛି ରୁଧିରପାୟୀ,
ଘୂରୁଛି ପୃଥିବୀ, ଥରୁଛି ଆକାଶ, ଗର୍ଜେ ଗରଳବାହୀ ।
ଶ୍ୟାମଳଗ୍ରହରେ କାମଳର ଛାୟା, ଅସମାନତାର ବିଷ,
ଆଧିପତ୍ୟ ଓ ସମରବାଦର କୃପାଣ ମୁକ୍ତକୋଷ ।
'ଜଗତିକରଣ' ନାଆଁରେ ଜଗତ ଘନ ଅଂଧାର, କଳା,
ମୂଲ୍ୟବୋଧ ଓ ମାନବତା ସବୁ ମଣିଷର ଯାହାଥିଲା

ସବୁ ଯେତେବେଳେ ଯାଏ ରସାତଳେ, ଠିକ୍ ସେତେବେଳେ କବି-
କଳାକାର ଆଉ ଲେଖକ ଆଂକେ 'ବନ୍‌ସାଇ' ଗଛ ଛବି ।
ଅବୋଧ୍ୟତାର ଗଦ୍ୟ-ମରୁରେ କୁଛାଏ ଓଟ ଦଳ,
ମଦ ବୋତଲର ସଦର ଘାଟିରେ ଫୁଟେ ଗଣିକାର ଫୁଲ ।
ନୌକରସାହି ସଢ଼ା ଚମ ତଳେ ହସେ ପ୍ରଶାସକ-କବି,
ସଭା ମଂଚରେ ହୁଏ ସେ ଅତିଥି, ଦୂରଦର୍ଶନେ ଛବି-
ପୁଷ୍ପମାଳାରେ ଗ୍ରୀବା ମଣ୍ଡନ, ଚାଟୁକାର ସମବେତ,
ସଂସ୍କୃତିମାନେ ନିତମ୍ବ-ଦୋଳା, ବେହିଆ ପିଚାରେ ବଥ ।
ମଂଦ-କବିର ଭୁଜ-ବଂଧନେ ବୀଣାପାଣି ଜଡ଼ସଡ଼,
ବାଣୀ ମୂଳକରେ ବେରସିକ ପୁଣି ଫଟା ରସିକର ଭିଡ଼ ।

କି ଦେଖୁଛ ତମେ ବସି ନୀରବରେ
ଦେବୀ ଗୋ ମହାଶ୍ୱେତା ?
ଫୁଲି ଫୁଲି ଉଠେ ଲହୁର ଦରିଆ
ବାହୁନେ ନିଖିଳ ବ୍ୟଥା ।
ବାଲ୍‌ମିକୀର ତ ବଂଶ ବୁଡ଼ିଛି
ବ୍ୟାଧର ବଂଶ ବଢ଼େ,
ବାରଣ' ବଢ଼େଇ ସଂସ୍କୃତି ଆଜି
ଗ୍ରାମ, ନଗରର ଭିଡ଼େ ।
ଏତେବେଳେ ଦେବୀ ହୁଅ ଗୋ ଭୟଂକରୀ,
ଫିଙ୍ଗ ଗୋ ବୀଣା, ଲେଖନୀ, ତୂଳିକା
ଧର ହାତେ ତରବାରୀ ।
ଅସତ୍-କାବ୍ୟେ ଅଭିଶାପ ଦିଅ
ଅସତ୍-କବିରେ ମାର,
ଧ୍ୱଂସ କରଗୋ ଅପସଂସ୍କୃତି

ଅପସାହିତ୍ୟ ଗଡ଼ ।
ନାଚିଉଠ ତମେ ଅଗ୍ନି-ନଟିନୀ
ବିଷମ ରୁଦ୍ର ତାଳେ,
ତମକୁ ମୁଁ କବି ପ୍ରଣତି ଜଣାଏଁ
ଝଡ଼ର ଦେଉଳ ଦ୍ୱାରେ ।



ରଚନା କାଳ : ୧୨ ଜୁନ୍ ୨୦୦୩

# ଜୟଗୀତ

ଈଶ୍ୱର ପରି ମୂକ ଆଉ ନୀରବ
ବିଧାତାପରି କଠୋର ଆଉ ପାଷାଣ
ପୃଥିବୀ ପରି ପତିତା ଆଉ ସର୍ବଂସହା
କିଏ ଅଛି ?

କିଏଅଛି ଆକାଶପରି ଉଦାର ?
କେହି ନାହିଁ ।

ସମୁଦ୍ରଠାରୁ ଅଧିକ ବିଦ୍ରୋହୀ,
ଅଧିକ ବିପ୍ଳବୀ କିଏ ?
ମରୁଭୂମିଠାରୁ ଅଧିକ ତୃଷା
କାହାରି ନାହିଁ ।
ମହାକାଳଠାରୁ ଅଧିକ ଗୁଂଜରଣ
କେହି ଜାଣେନା,
ମଣିଷଠାରୁ ବଳି କ୍ରୁର
ଜୀବଜଗତରେ କେହିନାହାନ୍ତି ।

ମଣିଷର ଅନ୍ୟନାମହେଲା : 'ସଭ୍ୟପଶୁ' ।
ପଶୁତା ସହିତ ସଭ୍ୟତାର ମିଶ୍ରଣ
କେତେ ଭୟାନକ, କେତେ ଭୀତିପ୍ରଦ
ତାର ପ୍ରମାଣ ହେଲା ମଣିଷ ।

ଆପଣାର ଯୂପକାଠେ
ଆପେ ସିଏ ବଳିର ଛାଗଳ,

ମଣିଷର ମାନବତା ଆଜି ହାୟ
ନିର୍ଘାତ ପାଗଳ ।

କେତେବେଳେ ସେ ନିରୀହ ତ
କେତେବେଳେ ହିଂସ୍ର,
କେତେବେଳେ ସେ ମୁକ୍ତ ତ
କେତେବେଳେ ବଂଦୀ ।

କବି ଗାଏ...ଗାଇଛି ମଣିଷର ଜୟ
ମାତ୍ର ମଣିଷ କିନ୍ତୁ ଘଟାଏ
ଜୀବନର ଶୋଚନୀୟ ପରାଜୟ ।

ଜୀବନର ସମସ୍ତ ସଂକଳ୍ପ ବ୍ୟର୍ଥ
ସବୁରି ଉପରେ ସତ୍ୟ ଆଜି ସ୍ୱାର୍ଥ ।

ତେଣୁ
ସ୍ୱାର୍ଥର ଜୟହେଉ
ଅର୍ଥର ଜୟହେଉ
ପୁଂଜିର ଜୟହେଉ
ଧ୍ୱଂସର ଜୟହେଉ
କଂସର ଜୟହେଉ
ଜୟହେଉ...ଜୟହେଉ ।

❑❑❑

ରଚନା କାଳ : ତା ୨୨.୩.୨୦୦୨

# ଫୁଲ ଫୁଟିବାର କଥା କୁହନାହିଁ

ଯାହାକୁ ବଢାଅ ମୈତ୍ରୀର ହାତ ହେ କବି ପ୍ରଧାନମନ୍ତ୍ରୀ,
ହାତରେ ତ ତାର ବୋମା, ବଂଧୁକ, ସେତ ସାମରିକତନ୍ତ୍ରୀ ।
ଧର୍ମ ତାହାର ତ୍ରାସ, ସଂତ୍ରାସ, ତା ବୁଟ୍ - ଗୋଇଠି ତଳେ-
ମେହନତୀ ଜନ କେତେ ଯେ ପିଷ୍ଟ, କେତେ ମଲେ, କେତେ ଗଲେ,
କେଉଁ ହିସାବର ଫର୍ଦ୍ଦରେ ନାହିଁ ଲେଖା,
ସେ କଥା ଲେଖୁଛି ମୃତ୍ୟୁ, ହତ୍ୟା, ରକ୍ତର ବିଭୀଷିକା ।

ପିଆଜ ଗଛରୁ ଫୁଟେନା ଗୋଲାପ, ପିଆଜତ ଚୋପାମୟ,
ଲୁକ୍କାୟିତ ସେ ଧରଣୀଗର୍ଭେ, ତାକୁ କିଆଁ ଏତେ ଭୟ ?
ନିଜେତ ନିଜର ମୈତ୍ର ନୁହେଁ ସେ, ତାକୁ ମୈତ୍ରୀର ହାତ-
ବଢାଇ ପଢିଲେ ଦିଲ୍ଲୀରେ ବସି ଭୋଅଟର ଭାଗବତ,
ଗଡାଇଲେ ବସି କାଶ୍ମୀର-ଜପାମାଳୀ,
ଆହୁରି ଫୁଲିବ ଲହୁର ଦରିଆ, ଝେଲମ୍ ହୋଇବ ନାଳି ।

କାଶ୍ମୀର ସିନା କୂଟ-ଶକୁନୀର ପଶାପାଲି, ପଶାକାଠି,
କାଶ୍ମୀର ଆମ ଦୁର୍ଭାବନାର ଅନ୍ତବିହୀନ ଘାଟି ।
ଭୀତି, ଆତଂକ, ତ୍ରାସ, ସଂତ୍ରାସ ନାମ ହେଲା କାଶ୍ମୀର
ଦୀନ ଦରିଦ୍ର ଭାରତବାସୀର ଯେତେ ଦୁର୍ଗତି,
କାଶ୍ମୀର ମୂଳାଧାର,
ଶୀତଳ-ଯୁଦ୍ଧ, ଦୁଶ୍ଚିନ୍ତା ସେ ଶହେକୋଟି ଜନତାର ।

ତମାମ୍ ଭାରତେ ଅସାମ୍ୟ, କ୍ଷୁଧା, ଦୁର୍ନୀତି, ରାହାଜାନୀ
ଶୋଷଣ, କଷଣ, କରଭାର ପୁଣି ବେକାରୀ, ଜୀବନହାନୀ ।

ଗଣଧର୍ଷଣ, ହତ୍ୟା ଓ ଗୁଳି, ଭ୍ରାତୃଘାତର ଦଂଗା,
ଶିଶୁ ନରନାରୀ ରକ୍ତସିନାନ ପ୍ରଦୂଷିତ ଗଣଗଂଗା ।
ବାହୁବଳେନ୍ଦ୍ର ହାରାମ୍‌ଜାଦାଏ ଏ ଦେଶର ଜନନେତା,
ତୁଳସୀ ଚଉରା ମୂଳ ଅଂଧାର, ଧାଡ଼ିଧାଡି ଜଳେ ଚିତା ।
ସ୍ତନବୃନ୍ତରୁ ଝଡିପଡେ ଶିଶୁ, କୁଳବାଳା ବିକେ ଦେହ,
ଯୁବକର ଦଳ 'ଯୁ' ହୀନ ବକ, ଜୀଇବାଟା ଦୁଃସହ ।
ଭାଜେ ପରିବାର, ସମାଜ-ଜୀବନ, ସଭ୍ୟତା ରସାତଳେ,
ବୁଦ୍ଧିବାଦ ଓ ଜ୍ଞାନ ଦେବାଳିଆ, ଜନମତ ନରକରେ ।

'ପଲିଟିକ୍ସ'ର ପାଉଁଶ ଗଦାର ତଳେ,-
ଯାକୁଡ଼ାଂକିବା ପାଇଁ କାଶ୍ମୀର ସମସ୍ୟା କୁହା ଚାଲେ ।
ଗୋଟା କାଶ୍ମୀର ନାଲିଆ ଆପେଲ୍ କଟାହୋଇ ବେନିଫାଳ
ଗୋଟାଏ ଫାଳରେ ସଂତ୍ରାସବାଦ, ତାର ଅନୁଡିଶାଳ ।
ମରଣବଧୂର ପ୍ରସୂତି-ବେଦନା ସେ ଫାଳରୁ ଯାଏ ଶୁଣା,
ଗର୍ଜନକରେ ଭରା ରାଇଫଲ୍, ମରେ ନର, ନାରୀ ସେନା ।
ମରେ ଶିଶୁ, ମରେ ବୃଦ୍ଧ, କିଶୋର, ଅସହାୟ ନର-ନାରୀ,
କାଶ୍ମୀର -ବଧୂ ରକ୍ତ କପୋଳେ ଚୁମ୍ବନ ଦିଏ ଢ଼ାଳି-
ଯମ ଆଉ ଯମଦୂତ,
କୁହ ଜାହାଁପନା, କେତେକାଳ ହେବ ଜୀବନର ପରାଭୂତ ?
ଉଠାଇ ଫିଙ୍ଗ କୂଟ ଶକୁନୀର ସେଠୁ ସେହି ପଶାପାଲି,
ସେହି ସେ 'ଆଜାଦ୍ କାଶ୍ମୀର' ବୁକେ କୁଦିପଡ ଝଡଭଳି ।
ଗୋଟା କାଶ୍ମୀରେ ଗଢ଼ି ପୁଣିଥରେ  ଆଗର ସ୍ୱର୍ଗ ଛବି
ଯଦି ନ ପାରିବ ଛାଡ କାଶ୍ମୀର ଆଶା ବାଜ୍‌ପେୟୀ କବି ।

ଏହି କଥା କୁହେ ଭାରତ-ଭାରତୀ, ଶତକୋଟି ହୃଦ-ବ୍ୟଥା
ଗାଇବତ ଗାଅ ଅଗ୍ରଗତି ଓ ଯୁଦ୍ଧଜୟର ଗାଥା ।

ଫୁଲ ଫୁଟିବାର କଥାକୁହନାହିଁ ଆହେ କବି ବାଜ୍‌ପେୟୀ
କେତେ ଚିତା ଜଳି ନିଭେ ନିତିଦିନ ସେହି କଥା କୁହ ଭାଇ ।
ଶୀତଳ ଯୁଦ୍ଧ ଦାଉ-
ସହି ହେଉନାହିଁ, ଛାଡ଼ କାଶ୍ମୀର, ଯାଉ, ନରକକୁ ଯାଉ ।

❑❑❑

ରଚନା କାଳ : ୧୮ମଇ, ୨୦୦୩

## ତମେ ଯେ ଆସିବ...

କବିତାକୁ ମୋର ପ୍ରଣାମ କର,
ସମାଜ-ବଦଳା-ଚିନ୍ତାକୁ ମୋର ସଲାମ୍ କର...
କବିତାକୁ ମୋର ପ୍ରଣାମ କର ।

ତମେ ଯେ ଆସିନ, ଆସିବ ନିଶ୍ଚେ
ହେ ଅନାଗତ,
ବୀର୍ଯ୍ୟବାନ ଯେ ସୂର୍ଯ୍ୟ ଉଇଁବ
ରକ୍ତସ୍ନାତ ।
ରାତ୍ରିର କଳା ଯବନିକା ଚିରି
ତରୁଣକାନ୍ତି, ମହାନ୍ କ୍ରାନ୍ତି
ହେ ମୋ ଆଗାମୀର ବଂଶଧର,
ସତ୍ୟ, ଶାନ୍ତି, କ୍ରାନ୍ତି, ସାମ୍ୟ
ସଲାମ୍ କର,
କବିତାକୁ ମୋର
ପ୍ରଣାମ କର ।

ମାନବ ଜାତିର ମର୍ମ୍ମବେଦନା, ଲଢ଼ାଇ, ଲୁହ,
ବିଦଳିତ ଜନ ଯୁଦ୍ଧଜୟର ବାର୍ତ୍ତା ସେହୁ ।
ସେହି ବାର୍ତ୍ତାର ବାର୍ତ୍ତାବାହକ ଥିଲି ମୁଁ କବି,
ଉଷାର ଶଂଖନିନାଦ, ବଂଶୀ
ଥିଲି ପ୍ରଭାତର ମୁଁ ଭୈରବୀ ।
ବଜାଇ ବଜାଇ ଝଡ଼ର ବେହେଲା
ରଚନା କରିଛି ଅଗ୍ନିବେଦ,
ମରାଳ-ହ୍ରଦର ତୀର-ତରୁ ତଳେ
ମୋର ହୋମଶିଖା, ଯଜ୍ଞ-ଅନଳେ
ଦାନବବାଦକୁ କରିଛି ସ୍ୱାହା...

ମୁଁ ଦୁର୍ମଦ,
ବଳଦର୍ପୀର ଦୁର୍ଗ-ତୋରଣେ
ଲେଖିତ ଦେଇଛି
'ଦୁଃସମ୍ବାଦ' ।

ବ୍ୟସ୍ତ ଆଜିତ ଅସ୍ତ-ଆକାଶେ
ନୀଡେ ଫେରନ୍ତି ବିହଂଗମ,
ବାକି ରହିଗଲା ବହୁ କାମଦାମ
ମୋ ସଂଗ୍ରାମ ।
ପୁଉଣି ଫେରି ତା ସାରିବାକୁ ହେବ
କରିବାକୁ ହେବ ଯୁଦ୍ଧଜୟ,
ଧନତନ୍ତ୍ରର ଧମନୀ ବିଦାରି
ଶ୍ୟାମଳ ଗ୍ରହକୁ କରିବାକୁ ହେବ
ସାମ୍ୟମୟ ।
ତମେ ଯେ ଆସିନ ମୁକ୍ତିସେନାନୀ
ତମରି ପାଇଁ,
ଅସ୍ତ ହେବି ମୁଁ ଅଗ୍ରଯାୟୀ
ଉଦୟ ପାଇଁ ।

ଆଶୀର୍ବାଦ ମୁଁ କରୁଛି ତୁମକୁ
ପୂର୍ବସୂରୀରେ
ପ୍ରଣାମ କର,
ସମାଜ-ବଦଳା-ଚିନ୍ତାକୁ ମୋର
ସଲାମ୍ କର,
କବିତାକୁ ମୋର
ପ୍ରଣାମ କର ।

❑❑❑

ରଚନା କାଳ : ୨୨ ମଇ, ୨୦୦୩

# ଅସଂଭବ

ଅନୁବାଦ କେହି କରିପାରିବନି ମୋତେ
ମୁଁ ତ ନିଜେ ମୋର କାବ୍ୟର ବ୍ୟାକରଣ,
ମୁଁ ତ ଥିଲି, ଥିବି ମଣିଷର ଚଲାପଥେ
ମୁଁ ତ ମାନବର ମୈତ୍ରୀର ଗ୍ରଥଂନ ।

ମୋର ସଳିତାର ପାଉଁଶ ହୋଇଛି ଜମା
ଅମାୟୀକ ଶିଖା, ମୁଁ ତ କେବେ ଲିଭିନାହିଁ,
ଆଲୋକ-ବାଳିକା, ନାହିଁ ମୋର ତର୍ଜମା
ଭାଷାନ୍ତର ମୋ ମୋଟେ କରିହେବନାହିଁ ।

ନିଜକୁ ନିଜେ ମୁଁ ଅନୁବାଦ କରେ ନିତି
ରଚନା କରେ ମୁଁ ଆପଣାର ଜୟଗାଥା,
ବାଧା, ଅବରୋଧ ବଢ଼ାଇ ଦିଏ ମୋ ଗତି
ଫୁତ୍କାରେ ମୋର ନିଭେ ମଶାଣିର ଚିତା ।

ମୋ ବ୍ୟାକରଣରେ ବିତ୍ତଶାଳୀ ମୁଁ ଧନୀ
ମୋ ଭାଷା-ଭାରତୀ ଶବ୍ଦର କଲ୍ଲୋଳ,
ସତ୍ୟ-ଶିବର କବି ମୁହିଁ ସଂଧାନୀ
ମୋ ପାଇଁ ଫୁଟିଛି ହୃଦେ ଲାଲ-ଶତଦଳ ।

ଅମର ଲେଖନୀ ଭିତରେ ମୋ ଯେଉଁ ମସୀ
ସୂର୍ଯ୍ୟରୁ ବଳି ପ୍ରବଳ ବୀର୍ଯ୍ୟବାନ,
ସେ ମୋ ହୃଦୟର ଭଗିନୀ ରକ୍ତକେଶୀ
ସୃଜନର ସେତ ଅବିନାଶ ଇଂଧନ ।

ମୁହିଁ ମୋତେ ପଢି କରିଛି ଭାଷାନ୍ତର
ସାମ୍ୟ ସମତା ଭାଷାରେ କହିଛି କଥା,
ସେକଥା ଜାଣିଛି ପବନର ହିଲ୍ଲୋଳ
ସେ ଭାଷା ଜାଣିଛି ସାଧନାର ନୀରବତା ।

ମୋର ଅନୁବାଦ ଅସମ୍ଭବ ସେ କଥା
ମୁଁ ଯେ ପାଦପର ପଲ୍ଲବ-ଆବେଦନ,
ମୁଁତ ନିଖିଳର ମହା ବିଦ୍ରୋହ ବ୍ୟଥା
ସୃଜନର ଏକ ସବୁଜ ମୁଁ ତପୋବନ ।



**ରଚନା କାଳ : ୨୦ଅଗଷ୍ଟ, ୨୦୦୩**

# କାହିଁକି ମରୁଛ ?

ଲ୍ୟାଣ୍ଡ-ମାଇନ୍‌ର ବିସ୍‌ଫୋରଣରେ ମଲ
ତମେ ଯେଉଁମାନେ ପୁଲିସ କର୍ମଚାରୀ,
ସେହି ସେ ବିସ୍‌ଫୋରଣର ଭାଷାକୁ ପଢ
ପେଟପାଇଁ ଯିଏ କରୁ ଅଛ ନୌକରୀ ।

ମଣିଷ ଉପରେ ମଣିଷ ଅତ୍ୟାଚାର
ଶୋଷଣ, କଷଣ, ଦୁର୍ନୀତ, ରାହାଜାନୀ,
ଜନାରଣ୍ୟରେ ବିଦ୍ରୋହ-ଦାବାନଳ-
ଜାଳି, ଜାଗ୍ରତ ଅଗଣିତ ଫାଲ୍‌ଗୁନୀ ।

ତାର ଗାଣ୍ଡୀବ-ଟଂକାର ଶୁଣୁନାହଁ ?
ପଢ଼ିପାରୁନାହିଁ ସମାଜ-ବଦଳା ଲିପି ?
ପୋଷାକ ଶତ୍ରୁ, ତମେତ ଶତ୍ରୁ ନୁହଁ
କାହିଁକି ଲେଖୁଛ ମରଣର ଶିଳାଲିପି ?

ଦୂରେ ଉଠାଇଛି ଲୋହିତ ଇଂଦ୍ର-ମେଘ
ନଟା-ବିଜୁଳିର ତରବାରି ଝକମକ,
ଅଧିକ ବଢ଼ିବ ଝଡ-ତୋଫାନର ବେଗ
ଧୂସର ପୋଷାକ ଖୋଲି ତାର ରୂପ ଦେଖ ।

ତମେ ଶୁଣିନାହଁ ଦଳିତ-ଘାସର ଭାଷା
ଗଳିତ-ରାଷ୍ଟ୍ରଯନ୍ତ୍ର-ପହରାଦାର,
କାନଡେରି ଶୁଣ ଜନ ମୁକ୍ତିର ହ୍ରେଷା
ଜନଯୁଦ୍ଧର ପ୍ରବଳ ଅଟ୍ଟରୋଳ ।

ମାଡ ଖାଇ ମାଡ ଫେରାଇ ଦେବାର ଶିକ୍ଷା-
ପାଇଛି ମଣିଷ, ଦେଇଅଛି ଗିରି, ବନ,
ହରାଇବାର ସେ ନେଇଛି ମହାନ ଦୀକ୍ଷା
ପାଦତଳେ ତାର ମୃତ୍ୟୁ, ରଣାଂଗନ ।

ସେହି ସେ ମଣିଷ ମରେନି, ମରଣଜୟୀ
ତାକୁ କେ ମାରିବ ପଚାରଇ ଇତିହାସ ?
ତମେ ଯେଉଁମାନେ ମଣିଷମାରିବାପାଇଁ
ପିଂଧି ବସିଛ ଖାକୀ-ଦସ୍ୟୁର ବେଶ ।

ଗଣହତ୍ୟାରେ ଗରିବୀ ହଟିବ ନାହିଁ
ଯାତନା ଦେଲେତ ଆଦାୟ ହେବନି କଥା,
ବହୁତ କରିଛ, ଆଉ ପାପ କରନାହିଁ
ନର-ନାରାୟଣ ପାଦେ କର ନତ ମଥା ।

ମଣିଷ ଜାଗୁଛି ଉଦିତ ସୂର୍ଯ୍ୟ ଭଳି
ଅର୍ଜନପାଇଁ ସାମ୍ୟ, ଶାନ୍ତି, ସମତାର ଅଧିକାର,
ଏଠି ନିଭିଗଲେ ସେଠି ଯିଏ ଉଠେ ଜଳି
ସେହି ଅନଳକୁ କରରେ ନମସ୍କାର ।

❑❑❑

ରଚନା କାଳ : ୩୧.୭.୨୦୦୩

# 'ଗଣତନ୍ତ୍ର' ର କଥାକୁହ ନାହିଁ...

ମୋତେ ତମେ ଆଉ କୁହନା କୁହନା 'ଗଣତନ୍ତ୍ର'ର କଥା
'ଗଣତନ୍ତ୍ର'ର ତଳେତ ଲୁଚିଛି ଏକଛତ୍ରୀର ଛତା ।
ପୁଲିସି, ହାକିମ, ସୈନ୍ୟବାହିନୀ, ନୌକରସାହୀ-ଯୋକ,
ଭାଟ, ଭଡ଼ାଟିଆ, ତୋଷମୋଦକାରୀ, ଖାଉ-ମହାବାହୁତକ ।
ମଦ ଓ ବେଶ୍ୟା, ରିସ୍‌ପଦ୍, ଘୁଷ୍, କର, ଟିକସର ବୋଝ
ରାଜନେତ୍ରୀର ଗୁରୁ-ନିତମ୍ବ ଥଲ ଥଲ ଯଥା ପେଜ । ~

'ଗଣତନ୍ତ୍ର'ର ମହିମାରେ ଦେଶେ ନିଃସ୍ୱ ହୁଅଇ ଲୋକ
କୋଟି ନରନାରୀ ପାକସ୍ଥଳୀରେ ସାବାଳକ ହୁଏ ଭୋକ ।
ପାଠପଢ଼ା ଛୁଆ ପିଳେହି ପେଟରେ ରିକ୍ସା, ଜୁଆଳି ଭିଡେ,
ବଳଦର୍ପୀତ ସମାସୀନ ସିନା 'ଗଣତନ୍ତ୍ର'ର ମେଢ଼େ ।
'ଗଣତନ୍ତ୍ର'ର ତ୍ରାସ, ସଂତ୍ରାସ, ତାର କାଳକୂଟ ବିଷ,
ମାନବ ଜାତିର ଯାହା ମୂଳଧନ ତାକୁତ କଲାଣି ଗ୍ରାସ ।
ପାତାଳପୁରୀର ଦୈତ୍ୟ ଦାନବ, ତାର ଅପସଂସ୍କୃତି
ସୁରୁ କରିଅଛି ସାରା ଦୁନିଆଁରେ ଆଜି ତାର ବଜ୍‌ଜାତୀ ।

ଗଣତନ୍ତ୍ରର ଗଣିକା ବସ୍ତି, କାମର ବୃନ୍ଦାବନ
ମୋର ଏ ଭାରତ କ୍ଷୁଧାରେ ଆରତ, ସତ ଏଠି 'ରାମନାମ'
ହିଟ୍‌ଲର ଚେଲା, ଗୁରୁ ଦାଢ଼ିବାଲା, ନରମେଧ-ହୋମଶିଖା,
ଭ୍ରାତୃଘାତର ଦଂଗା, ରକ୍ତ-ଗଙ୍ଗାର ବିଭୀଷିକା ।
ତେତ୍ରିଶ କୋଟି ଦେବ ଦେବୀ ଏଠି, ଈଶ୍ୱର ନିରାକାର,
ମଣିଷ ଉପରେ ମଣିଷ ଚଳାଏ ଯେବେଳେ ଅତ୍ୟାଚାର,
ସେ ସବୁ କୁଆଡ଼େ 'ଭାଗ୍ୟ ଲିଖନ', ସବୁତ ପ୍ରଭୁର ଲୀଳା,
'ଗଣତନ୍ତ୍ର'ର ଘଟାଟୋପ୍ ତଳେ ନାଦ୍‌ସୀବାଦର କିଳା ।

'ଗଣତନ୍ତ୍ର'ରେ ପ୍ରଦୀପ ଜଳେନା, 'ଫୁତ୍‌କାରେ ନିଭେ ବତୀ,
କେକ୍ କଟାହୁଏ, ଲଭ୍ ଧିନାଧିନ୍, ଉତ୍‌କଟ ଶ୍ୱାନ ରତି ।
ମିଟରେ କନାରେ ବ୍ଲାଉଜ୍ ତିଆରି, ରମଣୀ ନିରୋଧବାଳା,
ଗର୍ଭୋଦୟର ସଂମ୍ଭାବନାର ଦୁଆରେ ପଡିଛି ତାଲା ।
ସଭ୍ୟତା-ରଥ ପଶ୍ଚିମେ ଛୁଟେ, ନୀଳ-ନୟନାର ଠାଣି,
ଡଲାର୍‌ର ବିଷଦାନ୍ତ ନାହୁଡ଼, ବିଶ୍ୱ-ତ୍ରାସର ତୂଣୀ
ତାର 'ମହିମ' ରେ ଇରାକ୍ ମଶାଣି ମଧ୍ୟପ୍ରାଚ୍ୟେ ଝଡ
ସାରା ଦୁନିଆଁରେ ତୋଳା ସରିଲାଣି କୌରବ ଯଉଘର ।
ବିଜ୍ଞାନୀ ମାନେ ସବୁ ଜ୍ଞାନପାପୀ, ତାଙ୍କୁ ମୁଁ କରେ ଘୃଣା,
ଜୀବନ ବିରୋଧୀ, ମାନବ ବିରୋଧୀ ତାଙ୍କରି ଗବେଷଣା,
ମହା ଭୂଗୋଳର ସଭ୍ୟତା ଆଉ ସଂସ୍କୃତି ଦେଲା ସାରି,
ଦାନବ ହାତକୁ ବଢ଼ାଇ ଦେଲା ଯେ ଧ୍ୱଂସର ତରବାରି ।

'ଗଣତନ୍ତ୍ର'ର କଥା କୁହନାହିଁ, କଥା କୁହ ଐକ୍ୟର,
କଥାକୁହ ଥରେ ହେ ମଣିଷ ଜାତି ଏ ବିପୁଳା ପୃଥ୍ୱୀର ।
କଥାକହି ଉଠ ଶିଶୁ-ଭୋଳାନାଥ ଆଗାମୀର ଶିଖା ତୁମି,
ସାଗର-ମେଖଳା, ବନାନୀ-ବିଭୂଷା ମଣିଷର ବାସଭୂମି,
ସମୁଦ୍ର, ମରୁ ଆକାଶ,ବତାସ, କଥା କହି ଉଠ ଜଡ
ସାରା ଦୁନିଆଁରୁ ଧ୍ୱଂସ କରରେ କୌରବ ଜଉଗଡ ।

'ଗଣତନ୍ତ୍ର'ର କଥା କହୁନାହିଁ, ସେ କଥା ସେତିକି ଥାଉ,
ସବୁରି ଉପରେ ମଣିଷ ସତ୍ୟ, ମଣିଷତ ମହାବାହୁ ।
ବିଶ୍ୱାକାଶରେ ଲେଖାତ ହୋଇବ ମଣିଷର ଜୟଗାଥା,
ଦାନବର ସାଥେ ଶେଷ ହାତାହାତି ଭାଂଗିବ ନିରବତା ।
ତା ନହେଲେ ହେବ ବିପୁଳା ପୃଥିବୀ ଦାନବ, ଦୈତ୍ୟପୁରୀ
'ଗଣତନ୍ତ୍ର'ଟା ତାରି ପରୱାନା, ସର୍ବନାଶର ଭେରୀ ।

□□□

ରଚନା କାଳ : ୨୫.୭.୨୦୦୩

## ଯୁଦ୍ଧ ସରିନାହିଁ

ମୋର ଗୋଟିଏ ଆଖିର ଆଲୋକକୁ
ସଂପୂର୍ଣ୍ଣ ନିର୍ବାପିତ କରିଛି
ବିଗତଶତାବ୍ଦୀର ଅଠସ୍ତରୀ ଓ ଛୟାଅଶୀ ସାଲର
ହତ୍ୟା ଯୋଜନା ।

ଆତ୍ମବିକ୍ରିତ-ଗୋଲାମ ମାନଙ୍କ ନଗରୀ
ରାଜଧାନୀ ଭୁବନେଶ୍ୱରର
କାଏମୀସ୍ୱାର୍ଥର ଘୃଣିତ ନରକ ମଧ୍ୟରେ
ମୁଁ ବସିରହିଛି
ବିଦ୍ରୋହର ବୃଦ୍ଧ ଏକ ରୁଦ୍ର-ବୈତାଳିକ ।
ମନାରଣ୍ୟରେ ମୋର ଆଦିମ କାଂଦଣା,
ହୃଦୟର ଅତଳ ଗଭୀରତାରେ
ଅର୍ବୁର୍ବ ଅର୍ବୁଦ ଆତ୍ମଯନ୍ତ୍ରଣାର କ୍ଷତଚିହ୍ନ ।

ହରାଇବାର ଦୀକ୍ଷାରେ ଦୀକ୍ଷିତ ହୋଇ,
ଜୀବନର ବିଶ୍ୱବିଦ୍ୟାଳୟରେ ଶିକ୍ଷିତ ହୋଇ,
ମୁଁ ସୃଷ୍ଟିକରିଛି ଅନେକ କ୍ରାନ୍ତି,
ଅଜସ୍ର ଘନଘଟା,
ମୁଁ ସେହି ସାମ୍ୟମୟ ଲୋହିତ-ସଂକ୍ରାନ୍ତି ।

ମୁଁ ବାମପନ୍ଥୀ,
ମୋ ବାମ ନୟନର ଆଲୋକ ନିଭୁ ନିଭୁ
ଦୈବାତ୍ ଯାଇଥିଲା ବର୍ତ୍ତି
ନିର୍ବାପନରୁ ।

ସେ ଆଖିର ଦୃଷ୍ଟି ଆଜି ଝାପ୍‌ସା,
ମୋ ମାତୃଭାଷାର ଲିପି
ମୋ ଆଗରେ ଆଜି ଅସ୍ପଷ୍ଟ ।

ବହୁତ ଦେଖିଛି,
ବହୁତ ଶିଖିଛି,
ବହୁତ ଲେଖିଛି,
ଜୀବନ ତମାମ୍ ମଣିଷକୁ ଡାକିଛି :
ଉଠ, ଜାଗ, କଥାକୁହ, ମଥାଟୋକ ।

ଆଜି
ଦେହରେ ବାର୍ଦ୍ଧକ୍ୟ
ସର୍ବାଂଗରେ ଦୌର୍ବଲ୍ୟ
ମନେହୁଏ, ମୁଁ ଯେପରି ଜଣେ କୁଳବୃଦ୍ଧ !
ମୁଁ ମୋର ତତ୍ତ୍ୱନିଏ,
ମୁଁ ମୋର ତାତ୍ତ୍ୱିକ,
ମୁଁ ମୋର ସେବା କରେ
    ମୁଁ ମୋର ସେବକ ।
ମୋର ସ୍ୱନକ୍ଷତ୍ର ମୋତେ ନାହିଁ ଜଣା
ମୁଁ ନିଜେ ଏକ ଗ୍ରହରେ ପରିଣତ ହେବାପରେ
ମୁଁ ତିଆରି କରିଛି ମୋର ଜନ୍ମ ଜାତକ ।
ଲଗ୍ନ ମୋର କୁମ୍ଭ,
ଲଗ୍ନର ଅଧିପତି ଶନି
ସ୍ୱଗୃହରେ ରହିଛି ବସି
ନିଜପାଇଁ ସିଏ କିଛି ରଖେନି, ରଖିନି ।
ଜାତକର ତୃତୀୟ, ସପ୍ତମ, ଦଶମ ଗୃହକୁ
ତା'ର ପୂର୍ଣ୍ଣ ଦୃଷ୍ଟି ।

ତା'ର ସେହି ଦୃଷ୍ଟି
ସେ ଗୃହକୁ ଜାଳି ପୋଡି କରଇ ପାଉଁଶ,
...କରେ ସର୍ବନାଶ ।

ମୁଁ ଶନିର ଶିଷ୍ୟ
ତା'ରି ଦୀକ୍ଷାରେ,
ତା'ରି ଶିକ୍ଷାରେ
ତା'ରି ବୀକ୍ଷାରେ
ମୁଁ ଅବିଜିତ, ଅପରାଜେୟ ଆଉ ଦୁର୍ଦ୍ଧର୍ଷ ।
ସେହି ଶନିର ବଳୟରେ
ଜୀବନ ତମାମ୍ ମୁଁ ଶାଣ ଦେଇଛି ମୋର ତରବାରି ।
ସେହି ତରବାରି
ମୋ ହାତରେ ପାଲଟିଛି ଦୁର୍ଜ୍ଜୟ ଲେଖନୀ,
ପାଲଟିଛି ଲେଖନୀର ମସୀ ।
ଦୀପ୍ତିମାନ ବୀର୍ଯ୍ୟବାନ ସୂର୍ଯ୍ୟ ମୋର ଅଙ୍କା
ମୁଁ ଆଲୋକର କବି,
ମୋ କାବ୍ୟ-ଛନ୍ଦର ଉତ୍ତାପରେ
ଅହରହ ଜ୍ୱଳନର ବାଜା ।

ଏକଦା ମୋ ଆଖିରେ ଥିଲା ଦିନେ ।
ଉଲ୍‌କାର କଟାକ୍ଷ
ଦେହେ ମୋର ଥିଲା
ଧୂଳି,ଧୂଆଁ, ବାଷ୍ପ, ଫସ୍‌ଫରସ୍,
କାର୍ବନ୍, ସଲ୍‌ଫର୍, ଅଭ୍ର ଆଉ ଲୁହା ।
ଛିଡିଥିଲି ମହାକାଶେଁ
ଅତିକ୍ରମୀ ସୌରର ସୋପାନ,
ନେଇ ମୋର ଆଲୋକର ପୁଛ ।

ଉତ୍ତପ୍ତ ଆଘାତେ ମୋର
ଥରିଥିଲା ମୃତ୍ତିକାର ଲୋମକୂପ,
ତା ପରେ ପାଲଟିଥିଲି ସ୍ଥଳ ଓ ଶୀତଳ ପିଣ୍ଡ ।
ବ୍ରହ୍ମାଣ୍ଡର ବଂଶଧର
ଜାଗତିକ-କ୍ରୋଧ ମୁଁ ପ୍ରଚଣ୍ଡ ।

ମୁଁ ନୁହେଁ ବଶିଷ୍ଠ,
ପ୍ରତିକୂଳତାରେ କେବେହେଲେ
ହୋଇନି ଅତିଷ୍ଠ ।
ମୁଁ ମଧ୍ୟସ୍ଵର୍ଗର ରଚୟିତା ମହର୍ଷି ବିଶ୍ଵାମିତ୍ର ।

ଘନାଏଁ ବିଦାୟ ବେଳା
ବସ୍ତୁସତ୍ତା ବିଲୟ ପ୍ରକ୍ରିୟା,
ପଶ୍ଚିମରେ ସୂର୍ଯ୍ୟାସ୍ତର ନିଆଁ ।
ଅସ୍ତ ଯଦି ଉଦୟର ପାଇଁ,
ଯୁଦ୍ଧକରି ବୃଦ୍ଧ ହେଲି
ଯୁଦ୍ଧ କିନ୍ତୁ ସରିନାହିଁ ...ନାହିଁ ।

❑❑❑

ରଚନା କାଳ : ୧୬.୧୦.୨୦୦୩ ରାତି ଦଶଟା

# ତମେ କେତେବେଳେ...

ହାତରୁତ ମୋର କଲମ ଖସୁଛି
ଖସୁଥିବ ତମ ସ୍ତନରୁ ଉତ୍ତରୀୟ
ତମବାଟ ଚାହିଁ ସମୟ କାଟେ ମୁଁ
ତମେ କି ଆସୁଛ ଘଟାଇବାପାଇଁ
ଦୂରତାର ପରାଜୟ ?

ତମ ଆସିବାର ସୂଚନା ଦେଉଛି
ପବନର ହିଲ୍ଲୋଳ,
ଦୋହଲି ଦୋହଲି ଭରା ମୁକୁଳରେ
ହସି ଉଠେ ସହକାର ।

ବାଜୁଛି ସଜନୀ
ତବ ଆଗମନୀ
ଇଥର ରଂଧ୍ର ଭେଦି,
ଗତି କଳ କଳ
ପ୍ରୀତି ଢଳ ଢଳ
ଆଗୋ ବହମାନ ନଦୀ !
ତମରି ସ୍ପର୍ଶରେ ମୋ ବାହୁନେ ବଂଶୀ
ହେ ରାଜହଂସୀ
କେଉଁଠି ହେବଣି ଆସି ?
କେଉଁ ବାହନରେ ଆସୁଛ ଦେବି ଗୋ !
ଭାବେ ସେହିକଥା ବସି ।

ଘର ଛାତ ପରେ କପୋତ-ମିଥୁନ
ପ୍ରେମ-ଆଳାପନ

ମଧ୍ୟ ଗଗନେ ରବି,
ଉଡ଼ିଗଲା କାକ ମୁହଁକୁ ଚାହିଁ ମୋ
ବସି ବସି, ରାବି ରାବି ।

ମନେ ମନେ କବି ଆଂକୁଛି ବସି
ତମ ଆସିବାର ନକ୍ସା,
ରାସ୍ତାରେ ଯାଏ
ଏକ ପରେ ଏକ ରିକ୍ସା ।
ତମରି ରିକ୍ସା କେତେବେଳେ ହେବ
କୁଟୀର ଦୁଆରେ ଠିଆ ?
ଓହ୍ଲାଇ ତମେ ଆସିବ ଭିତରେ
ହେ ମୋର ଗୋପନପ୍ରିୟା ।

❑❑❑

ରଚନା କାଳ : ୧୭ ଜାନୁଆରୀ, ୧୯୯୬ ମଧ୍ୟାହ୍ନ

# ତାକୁ ମୁଁ ଖୋଜୁଛି...

ଧରଣୀରେ ପାଦ ଦେଉ-ନଦେଉଣୁ
ଝଡର ବେହେଲା କାନେ ଶୁଣିଥିଲି ଶିଶୁ,
ଧ୍ୱଂସଧନ୍ୟା-ବନ୍ୟାର ଜଳେ
ନିରପରାଧ ମୋ ନିରୀହଜୀବନ
ଅସହାୟେ ଭାସୁ ଭାସୁ-
ଦୁର୍ଦ୍ଦୈବର ଅଜଗର ଅହି
ଚାରିଧାରେ ମୋର ତାର ବିଷ-କୁଣ୍ଡଳି
ଘେରିଥିଲା ମୋତେ
ଗଢ଼ି ତାର ଘାଟି
ପରେ ହେଲା ମୋର ସେ ନିରାପତ୍ତା
ଶନିର ମେଖଳା ଭଳି ।

ବଦ୍ଧମୁଷ୍ଟି ମୋର ଉତ୍ତୋଳି
କୁଆଁ କୁଆଁ ରବେ, ନିଆଁହୁଳା ଧରି
ବଜ୍ରର ଗରଜନେ,
ଫାଟି ପଡିଥିଲି ମୁଁ ଶିଶୁ-ବିଧାତା
ଅପସୃଷ୍ଟିର ଦରଶନେ ଦରଶନେ ।

ମହା ବିଦ୍ରୋହ ଛାଂଚରେ ମୋର
ଜୀବନଟା ହେଲା ଢ଼ଳା,
ଇସ୍ପାତେ ହେଲା
ତନୁ ମନ ମୋର ଗଢ଼ା ।
ଆକାଶ ନିଗାଡି ଶୂନ୍ୟର ରସ
ମୋତେ ଯେ ପିଆଇଥିଲା,

କୈଶୋର କାଳୁଁ ଖୋଜୁଛି ମୁଁ ତାକୁ
ମାଆ ଠାରୁ ବଡ, ସେ ମୋ ଜୀବନକୁ
ଦେଲା ଯେ ଦୀକ୍ଷା
ହରାଇବାର ଯେ ମହାନ୍ ଶିକ୍ଷା
ଖୋଜୁଛି ମୁଁ କବି, ତା ଋଣ ଶୁଝିବି
ଗୁନ୍ଥି ବସିବି ମୋର ହୃଦୟର ଛିନ୍ନ ଜବାର ମାଳା ।

ଆଜିବି ପାଇନି କବି ମୁହିଁ ତାର ଦେଖା,
ସେ ମୋ ଜୀବନର ମହାଶୂନ୍ୟତା
ତା ପାଇଁ ଆଜି ମୁଁ ପୃଥିବୀର ପଥେ
ଏକୁଟିଆ, ଏକା ଏକା ।

କିନ୍ତୁ ସେ ଅଛି, ତାକୁ ମୁଁ ଦେଖିଛି
ଧ୍ୟାନଗୁହା ତଳେ, ସାଧନା ବେଦିରେ ମୋର,
ସେ ମୋ ସକାଳର ସୁର୍, ଭୈରବୀ
ଭାଷାର ଭାରତୀ, ସେ ମୋ ବାଗ୍‌ଦେବୀ
ଜୀବନ-ମରଣ ହାତାହାତି ବେଳେ
ସେତ ମୋର ତଲଓ୍ୱାର୍ ।

ସେହି ଏକା ମୋର ଯୁଦ୍ଧ ଜୟର ଗାଥା,
ସେ ମୋ କାବ୍ୟର ମହା ଉପାଦାନ
ସେହି ମୋ ମନ୍ତ୍ର ଅଗ୍ନିବେଦର
ସେହି ମୋର ଲାଲ୍-ଗୀତା ।
ସେହି ମୋ ଆଖିର ଲୁହର ଦରିଆ
ଛାତି ତଳେ ମୋର ସେହିତ ଭୂକଂପନ,
ସାମ୍ୟ ଯୁଗର ଗ୍ରାମ୍ୟ ବଧୂର
ମଧୁର ଭାଷ୍ୟ, ସେତ ଅବଗୁଂଠନ ।

ପ୍ରଭଂଜନର ସଉଁଦର୍ଯ୍ୟକୁ
ତମେ ଯିଏ ନାହଁ ଦେଖି,
ଶ୍ୟାମ ଘନ ମେଘେ
ନଟୀ-ବିଜୁଳିର ପୀତାଭ ଝଲକ
ଧୂମକେତୁ ଜ୍ୱଳାମୁଖୀ-
ତାହାରି ପ୍ରତାପ, ପ୍ରକୋପ ଦେଖିନ
ଗଢ଼ିବା ପାଇଁକି ଭାଂଗି ଶିଖିନ
ଶୁଣ ଅକର୍ମଶିଳା,
ମରଣର ଋଣ ପରିଶୋଧ ପାଇଁ
ମାନବତା ଆଉ
ମଣିଷକି ଆସିଥିଲା ?

କେତେ ଶତ କୋଟି ଝଡ-ତୋଫାନରେ
ଅଗ୍ନିଗିରିର ଭୀମ ଘୁଦ୍‌କାରେ
ଜୀବନବାଦର, ଜୀବନ-ବେଦର ମନ୍ତ୍ର ହୋଇଛି ଲେଖା,
ନିଭିନାହିଁ କେବେ ସତ୍ୟର ଦୀପ ଶିଖା ।
ସେହି ସେ ଶିଖାର ମୁଁ କବି ନାଂଦୀକାର,
ତାରି ଆଲୋକକୁ ପ୍ରଣିତ ଜଣାଏଁ
କରେ ମୁଁ ନମସ୍କାର ।

❑❑❑

ରଚନା କାଳ : ୬ଜୁନ୍ ୨୦୦୩

# ବିଜୁ କହିଥିଲା...

ବିଜୁ କହିଥିଲା ଏ ପ୍ରଦେଶଟାକୁ 'ଲୁହାର ଓଡ଼ିଶା'କରିବ,
ପାଣିଫାଣି ମୋଟେ ଦରକାର ନାହିଁ, ଲୁହାର ଫସଲ ଫଳିବ ।
ଲୁହା-ଧନରତ୍ନ ଲୁହାର ଚାଉଳ
ଲୁହା ନଈ ନାଳ, ଲୁହାର ଶେଉଳ
ଲୁହା-ଜଂଗଲ, ଲୁହାର ପାହାଡ, ଲୁହାର ଶାସନ ଚାଲିବ,
ଗଳିକଂଦିରେ ଲୁହା କାରଖାନା, ଲୁହାତ ଦୁଃଖ ସାରିବ ।

ଲୁହାର ପ୍ରେମିକ, ଲୁହାର ପ୍ରେମିକା, ଲୁହା ସ୍ୱାମୀ-ସ୍ତିରୀ ହସିବେ
ଲୁହାର ଛାତ୍ର, ଲୁହାର ଛାତ୍ରୀ ପରସ୍ପରକୁ ରସିବେ ।
ବଡ ଦେଉଳକୁ ଭାଂଗି ଲୁହାରେ
ଗଢ଼ିବତ ବିଜୁ ତାକୁ ଆଉଥରେ
ଜଗା ଓ କାଳିଆ, ଦେବୀ ସୁଭଦ୍ରା ଲୁହା ଦେହନେଇ ବସିବେ,
ଲୁହା ପଦ୍ମରେ ମଣ୍ଡିତ ହୋଇ ମହମହ ଖାଲି ବାସିବେ ।

ଲୁହା ଟୋକୀମାନେ ଲୁହା ଟୋକାଙ୍କୁ ନିଶ୍ଚୟ ହେବେ ବାହାତ
ଲୁହାର ବଚ୍ଚା ପଇଦା କରିବେ 'ଖାରବେଳ' ପରି ଛୁଆତ ।
ଲୁହା ବେଣୀ, ଠାଣି, ସ୍ତନ, ନିତମ୍ବ
ଲୁହା 'ଲଭ୍', କିସ୍, ଲୁହା ଡାଳିମ୍ବ-
ଫଳିବ କୁଂଜେ, ଲୁହାର ସଂଜେ, ଲଭ୍ ଧିନାଧିନ୍ ବହୁତ
ଲୁହାର ସୂର୍ଯ୍ୟ ଉଇଁବ ପୂର୍ବେ ଲୁହାର ସକାଳ ସହିତ ।

ଓଡ଼ିଶାର ସବୁ କୋଇଲା, ଲୁହାର ପଥରତ ହେଲା ଚାଲାଣ,
ପ୍ରକୃତିର ଯା ଥିଲା ସମ୍ବଳ, ସବୁ ଗଲା ହେଲୁ ଗୋଲାମ ।
ଚଉଦଶହତ ହେକ୍ଟର ଟାଟା

ନେଇଥିଲା ଆସି ଚିଲିକାରୁ ପଟା
ଖାଉ ମହାବାହୁ ସବୁ ଖାଇଦେଲ, ତମକୁତ ଆମ ସଲାମ
ଓଡ଼ିଆ ଟୋକାର ବେକାରୀ ସାଂଗ, ଭୁଆସୁଣୀ ଭାଉ, ନିଲାମ ।

ଘୁଷ୍‌ଖୋର ତକ ଭୁଷକରି ନେତା, ସଂସ୍କୃତି ଆମ ଚଳଣୀ,
କଳାବଜାରର ବାତ୍ୟା ଭିତରେ ଗଣିକାଧର୍ମୀ ହେଲାଣି ।
ବିଜୁ ଶିଖାଇଛି ଭୋଟ୍ କିଣା ବିକା
ବିରାଡି କପାଳେ ଛିଡିଅଛି ଶିକା
ନିଜେ 'ହିରୋ' ବନି, 'ଯିରୋ' କରିଦେଲ ଜାତିଟାକୁ ପୂରା ମଶାଣି,
କୋଉଦିନ ତମ ମେଢ଼ ତ ଉଠିବ, ଦେଖିବୁ ଆମେ ସେ ଭସାଣି ?

'ପଲିଟିକ୍ସ'ର ପାଉଁଶ ଛାଇଛ, ବ୍ୟଥାର ବାଉଁଶ ପାହାରେ
ବୋପାର ନାଆଁଟା ଭୁଲିତ ଗଲାଣି ଏ ଓଡ଼ିଆ ଜାତିଟା ଆହାରେ ।
କା' ରେ ପଚାରିବୁ ? ମାଆତ ମଲାଣି
ଓଡ଼ିଆ ଭାଷାର କୂଳ ବୁଡ଼ିଲାଣି
ଓଡ଼ିଶାକୁ କରି 'ସୁନାର ମଶାଣି', ସେଥିରେତ ପ୍ରେତ ହୁଅରେ,
ପୋଡା କପାଳକୁ ତମେତ ଯୁଟିଛ ଯେତେ ସବୁ ଘୋଡାମୁହାଁରେ ।

□□□

ରଚନା କାଳ : ୨୦.୬.୨୦୦୩ (ରୋଗଶଯ୍ୟା)

# ଏକାକୀତ୍ୱ

ଏକାକୀତ୍ୱ ମୋ କେତେ ସୁଂଦର
  କେତେ ତାହା କମନୀୟ,
କେତେ ସେ ଭୀଷଣ, କେତେ ଭୟାନକ
  କେତେ ତାହା ବରାଭୟ,
କେତେ କମନୀୟ ରୂପଟି ତାହାର
ମୋ ମନ, ହୃଦୟ ତାର ମଂଦିର
ମୋର ଆତ୍ମାର ପରମାତ୍ମୀୟ
  ତା ବିନା ମୋର କେ ନାହିଁ,
ସେହି ମୋର ତୂଣୀ, ସେ ମୋ ପାଶୁପତ୍
  ସେତ ମହା ବିଦ୍ରୋହୀ ।

ଏକାକୀତ୍ୱ ମୋ ପ୍ରେମର ପାତ୍ରୀ
  ସେହି ମୋ ଗୋପନ ପ୍ରିୟା,
ସେହି କରିପାରେ କେବଳ ଧାରଣ
  ମୋ ପଉରୁଷର ନିଆଁ ।
ସମର ଶେଷରେ, କ୍ଲାନ୍ତ-ଶିବିରେ
ନିଃଶ୍ୱାସ ତାର ବାଜେ ମୋ କପାଳେ
କପୋଳେ ତାହାର ଚୁମ୍ବନ ଢାଳି
  ଏକାକାର ଦେହେ, ମନେ,
ଅଗ୍ରଗତିର ପାଇଁ କି କବିମୁଁ
  ଭରିଉଠେ ଇଂଧନେ ।

ମୋର ଏହି ଏକାକୀତ୍ୱକୁ କେହି
  କରିପାରି ନାହିଁ ଠାବ,

ଏକାକୀତ୍ୱ ମୋ ଗଭୀର, ବିଶାଳ
ଅସୀମ ମହାର୍ଣ୍ଣବ ।
ଏକାକୀତ୍ୱ ମୋ ଉଲ୍କାର ନୀଡ
ଜୀବନ-ମରଣ ଭିତରର ମୋଡ
ଚୁମ୍ବନ କରେ ଯେଉଁଠି ଆକାଶ
ଗଭୀର ଦରିଆ ପାଣି,
ଝଡ-ନୌକାର ପାଲ ସେଠି ଦିଶେ
ରେବତୀ ତାରାର ଠାଣି ।

ଏକାକୀତ୍ୱ ମୋ ଅଗ୍ନିର ବୀଣା
ଶିଖାୟିତ ଝଂକାର,
ଭାଷାର ଭାରତୀ, ସେ ମୋ ବାଗ୍‌ଦେବୀ
ସେହି ଶ୍ୱେତ ଶତଦଳ ।
ତାକୁ ମୁଁ ଦେଖିଛି ସାଧନା ବେଦିରେ
ଦୁର୍ଦ୍ଦିନେ, ଝଡେ, ମୋ ଚଉହଦିରେ
ତାକୁ ମୁଁ ଦେଖିଛି ଝଡର ଦେଉଳେ
ଈଶାଣ-ସିଂହଦ୍ୱାରେ,
ତାକୁ ମୁଁ ଦେଖିଛି ସମର-ଶିଖାରେ
ଝକମକ ତଲୱାରେ ।

ଏକାକୀତ୍ୱ ମୋ ପ୍ରବଳ ଶକ୍ତି
ବେସାଲିସୀ ଉପାଦାନ,
ସେହି ମୋ ଚେତନା, ବହ୍ନିର ବାନା
ଅବିଜିତ, ବଳବାନ ।
ତା ପାଇଁ ଭୁଲିଛି ନିଶୀଥ-ଶୟନ
ପଛକୁ ଚାହିଁନି, ଅଗ୍ରଗମନ
ଏକାକୀତ୍ୱ ମୋ ସଜାଗ ପ୍ରହରୀ

ଶୂନ୍ୟ ପୋଷାକଦେହୀ,
ତା ଠାରୁ କେ ନାହିଁ ସାଧୁ ସଚ୍ଚୋଟ
ତାକୁ ମୁଁ ହରାଇ ନାହିଁ ।
କେତେ ଆସି କେତେ ଗଲେଣିତ ଚାଲି
ଏକାକୀତ୍ୱ ମୋ ଅଛି,
ମୁଁ ଗଲେ, ସେ ଯିବ, ସେତ ମୋର ଶିବ
ତାରି ତାଣ୍ଡବ ରଚି,
ପୃଥିବୀର ବିଷ ପିଇଛି ମୁଁ କବି
ଫୁଟାଇଛି ଜବା, ରକ୍ତ-କରବୀ
ଅଶିବ ନାଶନ ପାଇଁ ମୁଁ ସୃଜିଛି
ଭୟାନକ ଭୂମିକଂପ,
ଏକାକୀତ୍ୱ ମୋ ନବ-ଉତ୍‌ଥାନ
ସେହି ମୋ ଦୀର୍ଘ ଲଂଫ ।

ଏକାକୀତ୍ୱ ମୋ ବିଧିର ବିଧାତା
ମହାବିଦ୍ରୋହ ରତ୍ନ,
ଦୁର୍‌ଦୈବର ବିନାଶକାରୀ ସେ
ଜ୍ୱାଳାମୁଖୀ ଧୂମକେତୁ ।
ଏକାକୀତ୍ୱ ମୋ ଶନିର ବଳୟ
ଅମଂଗଳ ସେ ମଂଗଳମୟ
ବିଶ୍ୱପ୍ରେମର ମହା ଓଁକାର
ପ୍ରଣାମ ଜଣାଏଁ ତା'ରେ,
ମୁଁ ତାର ଧାରକ, ମୁଁ ତାର ବାହକ
ଏ ପତିତା ପୃଥିବୀରେ ।

ଏକାକୀତ୍ୱ ମୋ ଜୀବନ୍ତ ବୋଧି
ତାରି ତଳେ ମୁହିଁ ବୁଦ୍ଧ,

ଜୀବନଟା ମୋର ନିଷ୍କାମବ୍ରତ
ସମାନତା ପାଇଁ ଯୁଦ୍ଧ ।
ନିଖିଳର ବ୍ୟଥା, ବେଦନାର ଝଡେ
ନୟନପ୍ରାନ୍ତୁ ଯେ ଲୋତକ ଝରେ
ସେହି ସେ ଲୋତକ ପାଲଟିଯାଏତ
ଭୀଷଣ ଲାଭାର ସ୍ରୋତ,
ଏକାକୀତ୍ୱ ମୋ ମହା ବିଦ୍ରୋହ
ମୁଁ ତାର ଉପୋଦ୍‌ଘାତ ।

❑❑❑

**ରଚନା କାଳ : ୫.୧୦.୨୦୦୩ ବିଜୟା ଦଶମୀ**

## ୪ ଅସମ୍ଭବ

ଅନୁବାଦ କେହି କରିପାରିବନି ମୋତେ
ମୁଁ ତ ନିଜେ ମୋର କାବ୍ୟର ବ୍ୟାକରଣ,
ମୁଁ ତଥିଲି, ଥିବି ମଣିଷର ଚଲାପଥେ
ମୁଁ ତ ମାନବର ମୈତ୍ରୀର ଗ୍ରନ୍ଥନ ।

ମୋର ସଳିତାର ପାଉଁଶ ହୋଇଛି ଜମା
ଅମାୟୀକ ଶିଖା, ମୁଁ ତ କେବେ ଲିଭିନାହିଁ,
ଆଲୋକ-ବାଳିକା, ନାହିଁ ମୋର ତର୍ଜମା
ଭାଷାନ୍ତର ମୋ ମୋଟେ କରିହେବନାହିଁ ।

ନିଜକୁ ନିଜେ ମୁଁ ଅନୁବାଦ କରେ ନିତି
ରଚନା କରେ ମୁଁ ଆପଣାର ଜୟଗାଥା,
ବାଧା, ଅବରୋଧ ବଢ଼ାଇ ଦିଏ ମୋ ଗତି
ଫୁତ୍କାରେ ମୋର ନିଭେ ମଶାଣିର ଚିତା ।

ମୋ ବ୍ୟାକରଣରେ ବିତ୍ତଶାଳୀ ମୁଁ ଧନୀ
ମୋ ଭାଷା-ଭାରତୀ ଶବ୍ଦର କଲ୍ଲୋଳ,
ସତ୍ୟ-ଶିବର କବି ମୁହିଁ ସନ୍ଧାନୀ
ମୋ ପାଇଁ ଫୁଟିଛି ହ୍ରଦେ ଲାଲ-ଶତଦଳ ।

ଅମର ଲେଖନୀ ଭିତରେ ମୋ ଯେଉଁ ମସୀ
ସୂର୍ଯ୍ୟରୁ ବଳି ପ୍ରବଳ ବୀର୍ଯ୍ୟବାନ,
ସେ ମୋ ହୃଦୟର ଭଗିନୀ ରକ୍ତକେଶୀ
ସୃଜନର ସେତ ଅବିନାଶ ଇନ୍ଧନ ।

ମୁହିଁ ମୋତେ ପଢ଼ି କରିଛି ଭାଷାନ୍ତର
ସାମ୍ୟ ସମତା ଭାଷାରେ କହିଛି କଥା,
ସେକଥା ଜାଣିଛି ପବନର ହିଲ୍ଲୋଳ
ସେ ଭାଷା ଜାଣିଛି ସାଧନାର ନିରବତା ।

ମୋର ଅନୁବାଦ ଅସମ୍ଭବ ସେ କଥା
ମୁଁ ଯେ ପାଦପର ପଲ୍ଲବ-ଆବେଦନ,
ମୁଁ ତ ନିଖିଳର ମହା ବିଦ୍ରୋହ ବ୍ୟଥା
ସୃଜନର ଏକ ସବୁଜ ମୁଁ ତପୋବନ ।

❑❑❑

ରଚନା କାଳ : ୨୦ ଅଗଷ୍ଟ ୨୦୦୩

# ପୃଥିବୀ ଟଳମଳ

ମଣିଷ ପାପଭାରେ
        ପୃଥିବୀ ଟଳମଳ,
ଜୀବନ-ମରଣତ
        ଏ ଦୁହେଁ ମୁହାଁମୁହିଁ
ଲଢ଼ାଇ ଘୋରତର...
ମଣିଷ ପାପଭାରେ
        ପୃଥିବୀ ଟଳମଳ ।

ସାମ୍ୟ-ସମତାର
        ସେନେହ, ମମତାର-
ଫୁଟିବନାହିଁ ଫୁଲ
        ଗଲାଣି ତାହା ଜଣା
ପ୍ରଗତି ବାଟବଣା
        ଚେତନା ଦୁର୍ବଳ,
ଶ୍ୟାମଳଗ୍ରହ ଧରା
        ଭୂଗୋଳ ଟଳମଳ ।

ତ୍ରାସ ଓ ସଂତ୍ରାସ
        ଗର୍ଜେ ଜନବନେ,
ଭୋକର ବିକଟାଳ-
        ମୂର୍ତ୍ତୀ ଦରଶନେ,
ଯେ ଆଜି ମହାବଳ
        ସେ ଆଜି ମହାପ୍ରଭୁ
ଶକ୍ତି, କ୍ଷମତା ତ
        ତାହାତେ ସବୁ ଠୁଳ,
ପୃଥିବୀ ଟଳମଳ...

କାଂଦେ ଇତିହାସ
    କାଂଦେ ସଭ୍ୟତା,
ଧ୍ୱସ୍ତ ସଂସ୍କୃତି
    ମରୁଛି ମାନବତା

ପଶୁର ଯୂଥ ପଲ
    ହାଡରୁ ମାଉଁସ ତ
ଝୁଣୁଛି ପଲପଲ,
ଯମକୁ ସାଥେ ଧରି
    ବୁଲୁଛି ନିଶାଚର,
ଧରଣୀ ଟଳମଳ...।

ମୃତ୍ୟୁ ଲୁଚକାଳି
    ଖେଳୁଛି ଦେଶେ ଦେଶେ
ସ୍ତନର ବୃନ୍ତରୁ
    ଶିଶୁର ଫୁଲ ଖସେ
ଯୀଶୁ ଓ ଆଲ୍ଲାର
    ଭୀଷଣ ଅଟହାସେ
ବିଶ୍ୱ ମହାକାଶ
    ଛାତିଟା ଥରଥର...
ଭୂଗୋଳ ଟଳମଳ ।

ସବୁକି ଯିବ ସରି
    ବୁଡ଼ିକି ଯିବ ତରୀ ?
ଏହାର ଉତ୍ତର
    କେ ଦେବ, କେହିନାହିଁ,

ସର୍ବନାଶ ବସି
ମାରୁଛି ତାର ହାଇ
ଜଳୁଛି ଚାରିଦିଗେ
ଧ୍ୱଂସ କାଳାନଳ
ଆକାଶୁଁ ହତାଶାର
ଝରୁଛି ହଳାହଳ,
ପୃଥିବୀ ଟଳମଳ ।

କୁହହେ ଛାୟାପଥ
କୁହହେ ଗ୍ରହତାରା
ମଣିଷ ଗଲା କାହିଁ ?
ଫେରିବକିନା ନାହିଁ ?

ସେ ମହାଜୀବନର
ପ୍ରବହମାନ ଧାରା,
ବହିବ ପୁଣି କେବେ
ନାଶିବ ପାପ ଭାରା ?
ଶୁଭିବ ପୁଣି କେବେ
କୁହୁ ତ କୋକିଳର
ଫୁଟିବ ଫୁଲ ପରି
ଶିଶୁର କଳରୋଳ ?
ପିଶାଚ ପଦାଘାତେ
ଧରଣୀ ଟଳମଳ ।

କବି ମୁଁ ଲେଖେ ବସି
ଜୀବନ ଜୟଗାଥା,
ଦୁଖିନୀ ନିଖିଳର

ବାଜେ ମୋ ବୁକେ ବ୍ୟଥା
ଛଂଦ-ଉତ୍ତାପେ
ଆଣେ ମୁଁ ଫାଲ୍‌ଗୁନ,
ଉଷାର କାମିନୀକୁ
ଦିଏ ମୁଁ ଚୁମ୍ବନ
ଥରେ ମୋ ଫୁଲଧନୁ
ଥରେ ତ ଥରଥର...
ପିଶାଚ ପଦାଘାତେ
ପୃଥିବୀ ଟଳମଳ ।

□□□

**ରଚନା କାଳ : ୫.୯.୦୩ ମଧ୍ୟାହ୍ନ**

# ଅବସର ନାହିଁ

ମରଣ-ବଧୂ ଗୋ ତମରି ନୂପୁରନାଦ-
ଶୁଣିବାକୁ ମୋର ନାହିଁ ଅବସର
ଲେଖେ ମୁଁ ଅଗ୍ନିବେଦ ।

ହୁତାଶନ-ବନ-ବିହାରୀ କବି ମୁଁ
ଝଡ ତୋଫାନର ଧୂସର ଛବି ମୁଁ
ଅଶିବ, ଅଶୁଭ, ଅମଂଗଳର ବିରୋଧେ ବଦ୍ଧ ମୁଠା-
ଉତ୍ତୋଳି ମୋର ଜିରାଫର ଗ୍ରୀବା
ସାଧନାରେ ମୋର ସୃଜେ ମୁଁ ଯେବେଳେ
ଶାଶ୍ୱତ ଘନଘଟା,
ପାଲଟି ଯାଇଛି ମୁଁ ଲୋହିତ-ସଂକ୍ରାନ୍ତି,
ଶପଥେ ଶପଥେ ଅପଥ-ପଥିକ
ଅଶ୍ୱାରୋହୀ ମୁଁ ଆଜିବି ଏକକ
ନିର୍ମାଣ କରେ କ୍ରାନ୍ତି ।

ସବୁ ଗରଳକୁ ଚଳୁ କରି କବି
ତାଣ୍ଡବ-ତାଳେ ମେଲି ଧୂର୍ଜଟୀ-ଜଟା,
ବିଷମ ତାଳର ନୃତ୍ୟ ଛନ୍ଦେ
ଧସାଇବାକୁ ଗୋ ଅସମାନତାର ଭିଟା,
ଠିକ୍ ଏତେବେଳେ ମରଣ-ବଧୂ ଗୋ
ମୋ ଜୀବନକାଶେ ଅସ୍ତମେଘର ଛାଇ,
ଘଟର ବିନାଶ ଘଟାଇବାକୁ ମୋ ଆସନାହିଁ, ଆସନାହିଁ ।

ଅଗ୍ନିବେଦର ଅନେକ ଶ୍ଳୋକ ମୋ
ରଚନା ରହିଛି ଅଧା,

ସାରିବାକୁ ଦିଅ, ତା ପରେ ପିଇବି
ତମ ପୀରତିର ସୁଧା ।
ସବୁ ଅମଣିଷ ମଳାପରେ ପ୍ରିୟେ
ଦେବି ମୁଁ ତୁମକୁ ଚୁମା,
ଘଟିବ ଘଟର ରୂପାନ୍ତର ମୋ
ପଂଚଭୂତରେ ଲୀନ ହେବାପାଇଁ
ଦୁଃଖ ନାହିଁ ମୋ ଜମା ।

ଥିର କର ତମ ଧୀର ପଦପାତ
ହେ ଅଭିସାରିକା ମୋର,
ତମର ନୂପୁର ନାଦ ଶୁଣିବାକୁ
ନାହିଁ ମୋର ଅବସର ।

❑❑❑

ରଚନା କାଳ : ୯.୩.୨୦୦୪

# ନମସ୍କାର କର ମୋତେ, ଆସ !

ଅଭିଶାପ କେଉଁପରି ମଣିଷକୁ କରେ ଆୟୁଷ୍ମାନ,
ପ୍ରଚଣ୍ଡ ଆଘାତେ ଜଡ଼ ହୋଇଉଠେ କିପରି ଚେତନ,
ଅନ୍ତହୀନ ସମ୍ମୁଖର ଚୌମ୍ବକୀୟ ମହା ଆକର୍ଷଣେ-
କେଉଁପରି ଜନ୍ମେ ଗତି, ଉପଗତ ହେଲେ ବିଶ୍ଳେଷଣେ-
ବୁଝିତ ପାରିବ ମୋତେ, ପାଇବତ ମୋର ପରିଚୟ,
ମୋ ବିଦ୍ରୋହୀ ବସ୍ତୁସତ୍ତା କେଉଁପରି ସଦା କ୍ରାନ୍ତିମୟ ।

ବାଧା, ଅବରୋଧ, ନିଂଦା
ବ୍ୟାରିକେଡ୍, କୁତ୍ସା, ଆକ୍ରମଣ,
କାଳକୂଟ ବିଷଧର
ନାଗ ଆଉ ନାଗୁଣୀ ଦଂଶନ,
ପାଦତଳେ ଭୂମିକଂପ
ଉର୍ଦ୍ଧ୍ୱାକାଶେ ବିଜୁଳି ଚମକ,
ବୁକୁଫଟା ଘଡଘଡ଼ି
ଇଂଦ୍ରମେଘ ବଜ୍ରର ଧମକ-
ସବୁର ମୁଁ ମୁକାବିଲା
ବିସ୍ମୟର ମୁଁ ଏକ ବିସ୍ମୟ,
କଳ୍ପନାର ଅତୀତ ମୁଁ
ମୋତେ ଯିଏ କର ସବୁ ଭୟ,
ଜୀବନର ମହାଧ୍ୱନି
ମହାକାବ୍ୟ, ପ୍ରାଣର ସଂଗୀତ,
ପ୍ରତିଭାର ଲୌହପିଣ୍ଡ
ସଂଘାତେ ମୋ ହୋଇଛି ଶାଣିତ ।
ବ୍ୟକ୍ତିରୁ ମୁଁ ଅନୁଷ୍ଠାନ
ପାଲଟିଛି ବିପ୍ଳବୀ ଚେତନା,

ମୋର ସୃଷ୍ଟି, ମୋର କୃଷ୍ଟି
ତାହା ଜନ୍ମେଜୟ ବହ୍ନିବାନା ।

ହେ ଲୋଭୀ ବ୍ରାହ୍ମଣ,
ଇତିହାସେ ଥିଲ, ଅଛ, ଯେଉଁମାନେ ତମେ 'ଗୁରୁ ଦ୍ରୋଣ'
ନଶିଖାଇ ଧନୁର୍ବିଦ୍ୟା, ଏକଲବ୍ୟ, ଧ୍ୟାନଗୁହା ଦ୍ୱାରେ-
ହୁଅ ତମେ ଉପଗତ ହାରାମ୍‌ଜାଦା 'ଦକ୍ଷିଣା' ଆଶାରେ ।
ବୀରତ୍ୱର ହେ ପଙ୍ଗୁତ୍ୱ, ହେ ବାମନ, ଆହେ ନୀଚମନା,
ମୁଁ ତ ନୁହେଁ ଏକଲବ୍ୟ, ବୃଦ୍ଧାଂଗୁଷ୍ଠି ଦେବି ମୋ 'ଦକ୍ଷିଣା' ।
ସ୍ୱୟଂସିଦ୍ଧ ମୁହିଁ, ମୋର ଗୁରୁ,
ମୁଁ ଏକ ଲୋହିତ ଗ୍ରହ, ବିଦ୍ରୋହ ଓ ବିପ୍ଳବ ମୋ ମେରୁ ।
ମୋର ଜ୍ଞାନ, ମୋ ପ୍ରଜ୍ଞାର ଉଭା ଯେଉଁ ଅତ୍ୟୁଚ୍ଚ ଖ୍ଲାଣ,
ଦୁର୍‌ଦୈବର ଅଭିଶାପ କରିଅଛି ତାହାର ଭିଆଣ ।
ମୁଁ ମହାସମର ଏକ, ଗୁଳିଘାତ, ଲକ୍ଷ ଲହୁଟିକା,
ସତ୍ୟର ମୁଁ ସେନାପତି, ଚେତନା ମୋ ସୈନିକ, ସୈନିକା ।

କାବ୍ୟର ନୂପୁରଧ୍ୱନି, ଜାଗତିକ-ଛନ୍ଦର ଉତ୍ତାପ,
ମୋର ଶବ୍ଦ, ମୋର ଭାଷା ସାମ୍ୟର ସଂଳାପ ।

ଇଂରେଜ୍-ସାମ୍ରାଜ୍ୟବାଦ
ଏକଦାତ ନେଇଥିଲା କାଟି-
ଏ ଦେଶର ବୁଣାକାର
ଶିଳ୍ପମୟ ଶିଳ୍ପୀର ଆଙ୍ଗୁଠି
ତ୍ରେତୟାର ନୁହେଁ ଉପାଖ୍ୟାନ,
ଏକଥା ଦେଖିଛି ଆଖି
ଥିଲାବେଳେ ଦେଶ ପରାଧୀନ ।
ଏକଲବ୍ୟ ବୃଦ୍ଧାଙ୍ଗୁଷ୍ଠି, ବୁଣାକାର-ଶିଳ୍ପୀଙ୍କ ଅଙ୍ଗୁଳି-
ହୋଇଥିଲା କଟା ପୁଣି ଏ ଭାରତେ, ତା ପରେ ମୋ ପାଳି-

ବିଂଶ ଶତାବ୍ଦୀକୁ ଯେବେ ଚାଲିଥିଲା ବର୍ଷ ଛୟାଅଶୀ,
ସଙ୍ଗଠିତ ଖାକୀ-ଦସ୍ୟୁ, ନଭେମ୍ବର ଛ'ଅର ବଦ୍‌ମାସୀ-
ନିର୍ବାପିତ କଲା ଆସି ମୋର ଏହି ଦକ୍ଷିଣ ନୟନ,
ହାତକୁ ଭାଙ୍ଗିଲା ମୋଡ଼ି, କରାଇଲା ମୋତେ ରକ୍ତସ୍ନାନ । (୨)
ମୋର ବାମ ନୟନ ଚାହାଣି-
ଉଲ୍‌କାର କଟାକ୍ଷ ସେତ, ମୋ ବରୀଷ୍ଠ ଭୟାନକ ଠାଣି ।
ଅର୍ଦ୍ଧ-ଅନ୍ଧ କବି,
ହୃଦେ ମୋ ବାଜୁଛି ଶୁଣ ସକାଳର ଲୋହିତ-ଭୈରବୀ ।
ବୈପ୍ଲବିକ ମୁଁ ଏକ ଚେତନା,
ମୁଁ ଅଦାହ୍ୟ, ଅବିନାଶ
ସାମ୍ୟ ଆଉ ଦ୍ୱଂଦ୍ୱର ପ୍ରେରଣା ।
ଧ୍ରୁବ ମୁହିଁ, ଧୂମକେତୁ
ଝଡ଼ର ମୁଁ ଧୂସର-ଓଁ କାର,
ପ୍ରକୃତିର ବିକୃତିକ ମୁଁ
ସମୁଦ୍ରର ଭୀମ ହୁହଂକାର ।
ଆକାଶ ନିଗାଡ଼ି ମୁହିଁ
ପିଇଛିତ ମହାଶୂନ୍ୟ ରସ,
ସଂଗ୍ରାମର ଇତିହାସ
ମୋ ଜୀବନ ନୁହେଁ ଉପନ୍ୟାସ ।
ଆସ, ମୋତେ କର ନମସ୍କାର,
ମୃତ୍ୟୁର ମରଣ ମୁହିଁ
ନାନ୍ଦୀକାର ମୁହିଁ ଜୀବନର ।

❑❑❑

ରଚନା କାଳ : ୮ ମାର୍ଚ୍ଚ-୨୦୦୪ (ରୋଗଶଯ୍ୟା)

*(୨) ୧୯୮୬ ନଭେମ୍ବର ଛଅ ତାରିଖରେ କଟକ ମଧୁପାଟଣା ଶିଳ୍ପାଂଚଳରେ ପ୍ରଖର ଦିବାଲୋକରେ କବିଙ୍କୁ ହତ୍ୟା କରିବାପାଇଁ ଏକ ଘାତକ ଆକ୍ରମଣ ହୋଇଥିଲା । ସେ ଆକ୍ରମଣର କାରିଗର ଥିଲା ପୁଲିସ୍ ଆଉ ତା'ର ଭଡାଟିଆ ଦୁଷ୍କୃତକାରୀମାନେ । କବିଙ୍କ ଡାହାଣ ହାତକୁ ମୋଟି ଭାଙ୍ଗିଦିଆ ଯାଇଥିଲା ଓ ତାଙ୍କ ଡାହାଣ ଆଖିରେ ଷୋହଳଟି ମୁଥ ବସିବା ଫଳରେ ତାଙ୍କର ସେ ଆଖିଟିକୁ କବି ଚିରକାଳ ପାଇଁ ହରାଇ ବସିଛନ୍ତି ।*



ରାଶି ରାଶି ଆଲୋଡ଼ନ, ଗୁଞ୍ଜନ, ଗୁଞ୍ଜରଣ, ପ୍ରଚାର-ଅପପ୍ରଚାର, ନିନ୍ଦା-ପ୍ରଶଂସା ସତ୍ତ୍ୱେ ଯାହାଙ୍କର କାବ୍ୟ ସାହିତ୍ୟ ପ୍ରଚୁର ପାଠକୀୟ ଶ୍ରଦ୍ଧା ସାଉଁଟିଛି ବା କାଏମୀ-ସ୍ୱାର୍ଥବାଦୀ ସାହିତ୍ୟିକ-ସାହୁକାରମାନଙ୍କର ମୂଳଦୁଆ ମୂଳେ ପ୍ରଚଣ୍ଡ ଭୂମିକମ୍ପର ତାଣ୍ଡବଲୀଳା ସୃଷ୍ଟି କରିଛି, ସେହି ସାଗ୍ନିକ ସୃଜନ ସତ୍ତା ତଥା ସ୍ୱର୍ଦ୍ଧିତ ସାରସ୍ୱତ ସାଧକ କବି ରବି ସିଂଙ୍କ 'ପୃଥିବୀ ଟଳମଳ' ଓଡ଼ିଆ ପାଠକ ପାଠିକାମାନଙ୍କ ପାଇଁ ସଦ୍ୟତମ କବିତା ସଂକଳନ ।

ମେଘ ମେଦୁର କୃଷ୍ଣ ଆକାଶରେ ଧାରେ ବିଜୁଳୀର ଚମକ ପରି ତାଙ୍କ କାବ୍ୟ ସ୍ୱାକ୍ଷର ଯେତିକି ପ୍ରାଞ୍ଜଳ ପ୍ରଚଣ୍ଡ ଗ୍ରୀଷ୍ମ ମଧ୍ୟାହ୍ନରେ କ୍ୱଚିତ୍ ବର୍ଷାର ବିନ୍ଦୁଏ ଜଳ ପରି ସେତିକି ମଞ୍ଜୁଳ ।

ଏହା ହିଁ ବୋଧେ ତାଙ୍କ କବିତାର ଅଳ୍ପକିଛି ପରିଚୟ ।

-ପ୍ରକାଶକ